# କନ୍ଦଳ ନଗର

ପ୍ରକାଶିକା—ଶ୍ରୀମତୀ ତରୁଲତା ମହାନ୍ତ

କୋଠର

ପୋ.ଅ. ଗୁରୁଣ୍ଡଖାଟିଆ ଜି:- କଟକ

ଲେଖକ—ଶ୍ରୀ ରାଜକିଶୋର ମହାନ୍ତ (ଏମ୍. ଏ. ବି. ଇଡ୍)

-ପ୍ରାପ୍ତିସ୍ଥାନ-

ଗୁରୁଣ୍ଡଖାଟିଆ

ପୋ:ଅ:-ଗୁରୁଣ୍ଡଖାଟିଆ ଜି:- କଟକ

୧ମ ସଂସ୍କରଣ—୧୯୮୮

ମୂଲ୍ୟ—

# ଉତ୍ସର୍ଗ ପତ୍ର

ମୋତେ ଜଣେ ଆଦର୍ଶ ନାଟ୍ୟକ କବି, ଲେଖକ, ଶିକ୍ଷାବିତ୍ ରାଜନୀତିଜ୍ଞ
ସଂଗଠନ ଓ ସମାଜ ସେବକ ହିସାବରେ ଯେଉଁ ମାନେ ପ୍ରାଣ
ପାତ ପରିଶ୍ରମ କରିଛନ୍ତି ମୋର ସେହି ପରମାରାଧ୍ୟ ପିତା
ବାଉରି ବନ୍ଧୁ ମହାନ୍ତି ଓ ପରମାରାଧ୍ୟା ଜନନୀ
ସ୍ୱର୍ଗତା ରେଖା ଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ
ସ୍ୱରଚିତ "କନକ ନଗରୀ"
ପୁସ୍ତକଟି ଓଡ଼ିଆ ଜାତି
ହସ୍ତରେ ଉତ୍ସର୍ଗ କଲି ।

ବିନୀତ

**ଲେଖକ**



# ଜୀବନୀ

ଶ୍ରୀ ରାଜକିଶୋର ମହାନ୍ତି ୧୯୨୪ ମସିହା ନଭେମ୍ବର ଅଠେଇଶ ତାରିଖରେ ପୁରୀ ଜିଲ୍ଲା କାକଟପୁର ଥାନା କନ୍ଦଳପୁର ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ସେ ୧୯୪୨ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ ପାସ କରି ଶିକ୍ଷକତା ଆରମ୍ଭ କଲେ । ଘରୋଇ ଭାବରେ ଆଇ.ଏ. ବି.ଏ ଏମ୍.ଏ ପାସ କରିଛନ୍ତି । ଏତଦ୍ ବ୍ୟତୀତ ହିନ୍ଦି ଓ ବି.ଇଡ୍ ପାସ୍ କରିଛନ୍ତି । ସେ ଜଣେ କୃତୀ ବିଦ୍ୟ ଶିକ୍ଷକ ଥିଲେ । ଅନ୍ୟୁନ ୧୦ଟି ହାଇସ୍କୁଲର ସଂଗଠକ ପ୍ରଧାନ ଶିକ୍ଷକ । କାକଟପୁର, ନିମାପଡ଼ା, ଗୁରୁଡ଼ିଝାଟିଆ କଲେଜର ଉଦ୍ୟୋକ୍ତା ହିସାବରେ ପରିଚିତ । ଗୁରୁଡ଼ିଝାଟିଆ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ସେ ଅବସର ଗ୍ରହଣ କରିଛନ୍ତି । ସମାଜ ସେବା ତାଙ୍କ ଜୀବନର ବ୍ରତ । ବାଲି ପାଟଣା ହାଇସ୍କୁଲ (ପୁରୀ ଜିଲ୍ଲା) ରେ ପ୍ରଧାନ ଶିକ୍ଷକ ଥିବା ସମୟରେ ସେ କେନ୍ଦୁଲି ଦେଉଳି ଠାରେ କବି ଜୟଦେବ ସଂସ୍ଥା ସଂଗଠନ କରିଥିଲେ । ବନ୍ଧ ସମ୍ବେବର ପକ୍କାଦ୍ୱାର ପାଇଁ ସେ ବାରମ୍ବାର ସରକାରଙ୍କ ଉପରେ ଚାପ ପକାଉଥିଲେ । ଭୁବନେଶ୍ୱର ବି.ଏମ୍ ହାଇସ୍କୁଲରେ ଶିକ୍ଷକତା କରିବା ସମୟରେ ସେ ସୀମା ଆନ୍ଦୋଳନର ମୁଖ୍ୟ କର୍ତ୍ତା ଥିଲେ । ୧୯୫୫ ମସିହାରେ ଦଳେଇ ଘାଇ ଭାଙ୍ଗିଯିବାରୁ ଛାତ୍ର ମାନଙ୍କ ସହ ବନ୍ୟାଞ୍ଚଳରେ କାର୍ଯ୍ୟ କରିଥିଲେ । ୧୯୮୨ ମସିହା ବନ୍ୟାରେ ସେ ବିପନ୍ନ ଲୋକଙ୍କ ସେବା କରିଥିଲେ । ଆର୍ଥିକ ସାହାଯ୍ୟ ବନ୍ୟା କ୍ଳିଷ୍ଟ ଲୋକଙ୍କୁ ପ୍ରଦାନ କରିଥିଲେ । ୧୯୪୨ ମସିହା ଆନ୍ଦୋଳନରେ ସେ Under ground ଥିଲେ । ନେତାଜୀ ସୁଭାଷ ବୋଷଙ୍କ ଫରୱାର୍ଡ ବ୍ଲକର ପୃଷ୍ଠପୋଷକ ଥିଲେ । ସ୍ୱତନ୍ତ୍ର ପାର୍ଟିର ସଂଗଠକ ଜନ ସଂଘର ଦଳ ସଂପାଦକ କାର୍ଯ୍ୟ ଦୃଢ଼ରୂପେ ତୁଲାଇ ଥିଲେ । ସେ ସ୍ୱାଧୀନ ପ୍ରାର୍ଥୀ ରୂପେ ୧୯୬୧ ରେ କାକଟପୁରର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନ ସଭା ପାଇଁ ପ୍ରାର୍ଥୀ ହୋଇ ହାରିଯାଇଥିଲେ । ପୁନରାୟ ୧୯୮୫

[illegible] ନିର୍ବାଚନରେ ଆଠଗଡ଼ ନିର୍ବାଚନ ମଣ୍ଡଳୀରୁ ବି.ଜେ.ପି. ପ୍ରାର୍ଥୀ ରୂପେ ଲଢ଼ିଥିଲେ । ତାଙ୍କର ଅନ୍ୟତମ ସଂଗଠନ ସତ୍ୟଯୁଗ ସଂଘ । ସେ ମଧ୍ୟ ସତ୍ୟଯୁଗ ସଂଘର ସ୍ଥାୟୀ ସଭାପତି ଅଛନ୍ତି ଜ୍ୟେଷ୍ଠ ଏତଦ୍ ବ୍ୟତୀତ ସେ ଗୁରୁଜଙ୍ଗଝାଟିଆ ଗୋପବନ୍ଧୁ ସାହିତ୍ୟ ସଂସଦର ସଭାପତି ଅଛନ୍ତି । ସେ ପ୍ରତ୍ନତାତ୍ତ୍ୱିକ ଗବେଷଣା ମଧ୍ୟ କରନ୍ତି । ସେ କାବ୍ୟ କବିତା ଉପନ୍ୟାସ ଓ ନାଟକ ଆଦି ଲେଖି ପାରନ୍ତି । ବକ୍ତା ହିସାବରେ ସେ ପରିଚିତ । ରାଜନୀତି ସଂଗଠନ ସମାଜସେବା, ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ତାଙ୍କ ଜୀବନର ପରମ ଲକ୍ଷ୍ୟ । ସାହିତ୍ୟ, ରାଜନୀତି ଓ ସଂଗଠନ ମାଧ୍ୟମରେ ସେ ଯେଉଁ ଦିଗ୍ବଳୟର ସ୍ୱପ୍ନ ପାଠ କରନ୍ତି ତାହା ବାସ୍ତବିକ ଆମ୍ଭମାନଙ୍କର ଭବିଷ୍ୟତ ବଂଶଧର ମାନଙ୍କୁ ପ୍ରଗତି ପଥରେ ଆଗେଇ ନେବ ଏହା କହିବା ନିଃସନ୍ଦେହ ।



# କନ୍ଦଳପୁର ଗୋଟିଏ ପ୍ରାଚୀନ ଗ୍ରାମ

ପୁରାଣ ପ୍ରସିଦ୍ଧ କନ୍ଦରାସୁରର ଜନ୍ମ ସ୍ଥାନ କନ୍ଦଳପୁର ଅର୍ଥାତ୍ ପ୍ରାଚୀନ କନ୍ଦଳ ନଗର ଓ ମୃତ୍ୟୁ ସ୍ଥାନ କେନ୍ଦ୍ରାପଡ଼ା ବୋଲି ଜନଶ୍ରୁତି ରହିଅଛି । କେହି କେହି କହିବାର ଶୁଣାଯାଇଛି ଶ୍ୟାମ ଲୌହ ମୂଷଳ ଘର୍ଷଣ କରିବା ଫଳରେ ଯଦୁ ବଂଶର କନ୍ଦଳ ସେହି ସ୍ଥାନରେ ହୋଇଥିଲା । ସେ ସ୍ଥାନ ସନ୍ତରାବଣ ଅନ୍ତର୍ଗତ । ଯଦି ଶ୍ୟାମ ଲୌହ ମୂଷଳ ଚନ୍ଦ୍ରଭାଗା ତୀରରେ ଘର୍ଷଣ କରିଥିବେ ତାହା ହେଲେ ସନ୍ତରାବଣ ନିଶ୍ଚୟ କନ୍ଦଳ ନଗର ଠାରୁ କୋଣାର୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିବ । କନ୍ଦଳନଗର କାକଟପୁର ଅଥବା ହୁଏନସାଙ୍ଗ ବର୍ଣ୍ଣିତ କକଟନଗର କୁ ଲଗି ରହିଥିଲା । ପ୍ରାଚୀନଦୀ ଆଧୁନା କାକଟପୁରର ଦକ୍ଷିଣ ଦିଗରେ ବଙ୍ଗୋପସାଗର ଅଭିମୁଖରେ ଅବିରାମ ଗତିରେ ଛୁଟି ଚାଲିଛି । ପ୍ରାଚୀର ପୂର୍ବ ନାମ କନ୍ଦଳନଦୀ ବୋଲି ଅନୁମାନ କରାଯାଏ । ପ୍ରାଚୀର ବିଭିନ୍ନ ଧାର ମଧ୍ୟରୁ କନ୍ଦଳ ଧାର ଅନ୍ୟତମ । ବର୍ତ୍ତମାନ କାକଟପୁର ଥାନାର ବୋଲକଣା ଗ୍ରାମ ନିକଟରୁ କନ୍ଦଳ ଧାର ବାହାରି କନ୍ଦଳପୁର, ଲତାହରଣ, ଅନ୍ଧୁଣିଆ ପାଟଣା, ଓ ଜଙ୍ଗର ନଇଗୁଆଁ ଓ ବେଗୁନିଆ ଗ୍ରାମ ନିକଟରେ ପ୍ରବାହିତ ହୋଇ ବଙ୍ଗୋପସାଗରରେ ମିଶିଥିବାର ଜଣାପଡ଼େ । ଏହି ନଦୀର

ଉଭୟ କୂଳରେ କେତୋଟି ଶିବ ମନ୍ଦିର ଓ କେତେକ ପ୍ରାଚୀନ କୀର୍ତ୍ତି ଦେଖିବାକୁ ମିଳେ । ପ୍ରକୃତରେ ଶନ୍ଧାକଲେ କନ୍ଦଳ ଧାରଟି ପ୍ରାଚୀ ନଦୀର ଶାଖା ବା ଉପନଦୀ ନୁହେଁ । ସେହି ଧାରଟି କନ୍ଦଳପୁର ର ଉତ୍ତରରେ ବହିଯାଉଛି । ତାହାଥିଲା ବାସ୍ତବରେ ପ୍ରାଚୀନ ପ୍ରାଚୀ । ସେ ଯାହା ହେଉନା କାହିଁକି ପ୍ରାଚୀ କୂଳ ବୌଦ୍ଧ ଜୈନ ଓ ହିନ୍ଦୁ ସଭ୍ୟତାରେ ଋଦ୍ଧିମନ୍ତ ଥିଲା । ଆର୍ଯ୍ୟ ଅନାର୍ଯ୍ୟର ସମ୍ମେଳନ "ପ୍ରାଚୀ ମହାତ୍ମ୍ୟ" ପୁସ୍ତକରେ ପରିଦୃଷ୍ଟି ହୁଏ । ପ୍ରାଚୀ ଅର୍ଥାତ୍ ପୂର୍ବ କନ୍ଦଳ ନଦୀ ସୁନାବ୍ୟା ହୋଇ ଥିବାରୁ ନଦୀ କୂଳରେ ବାସ କରୁଥିବା ସାଧବ ( ଓଡ଼ିଶାର ବାଣିଜ୍ୟିକ ଜାତି ) ମାନେ ସୁଦୂର ଜାଭା, ବାଲି ସୁମାତ୍ରା ଦ୍ୱୀପ ଗୁଡ଼ିକରେ ସେହି ନଦୀରେ ବୋଇତ ଭସାଇ ବାଣିଜ୍ୟ କରିବାର ପୂର୍ଣ୍ଣ ସୁଯୋଗ ହାସଲ କରିଥିଲେ । ଆଜିକାଲି ମଧ୍ୟ ବାଲିଦ୍ୱୀପରେ ଓଡ଼ିଆ ମାନଙ୍କ ଉପନିବେଶର ଚିହ୍ନ ଦେଖାଯାଏ । ଓଡ଼ିଶା ଓ ବାଲିଦ୍ୱୀପର ସଂସ୍କୃତିରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

•

ପୁରୀ ଜିଲ୍ଲାସ୍ଥ କାକଟପୁର ଅଞ୍ଚଳରେ ତଅପୋଇ ନାମ୍ନୀ ସାଧବ ଲଳନାର କରୁଣ କାହାଣୀ ଏବେ ମଧ୍ୟ ଗଗନ ପବନରେ ଝଂକୃତ ହୁଏ । କାକଟପୁର ନିକଟରେ ବାଜପୁର ଗ୍ରାମ । ପୂର୍ବେ ସେହି ଗ୍ରାମର ନାମ ଥିଲା ବାଣିଜ୍ୟପୁର । ସେହି ଗ୍ରାମରେ ବହୁ ସାଧବ ବଂଶ ବାସ କରୁଥିଲେ । କଥିତ ତଅପୋଇର ଘର ବାଜପୁର ବା ବାଣିଜ୍ୟ ପୁର ଲେଖକ ତାହା ସ୍ୱରଚିତ "ଅସ୍ତରଙ୍ଗ" କବିତା ପୁସ୍ତକ ଓ "ନୀଳ ଦରିଆ ଡକେ" ଉପନ୍ୟାସରେ ଆଭାସ ଦେବା ସଙ୍ଗେ ସଙ୍ଗେ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରିଛନ୍ତି । ମଙ୍ଗଳା ଠାକୁରାଣୀଙ୍କୁ ଦଧି ବାମନ ସାହୁ ନାମକ ଜଣେ ସାଧବ ସିଂହଳ ଦ୍ୱୀପରୁ ବୋଇତରେ ଆଣିବା ସମୟରେ ଉକ୍ତ ବୋଇତଟି ପ୍ରାଚୀ ଗର୍ଭରେ ସଳିଳ ସମାଧି ନେଇଥିଲା । ପରେ ନଦୀ ଗର୍ଭରୁ ମା ମଙ୍ଗଳାଙ୍କୁ ଉଦ୍ଧାର କରାଯାଇ କାକଟପୁର ଗ୍ରାମରେ ତାଙ୍କ ପୂଜାର ବ୍ୟବସ୍ଥା କରାଗଲା । ପ୍ରାଚୀ କୂଳେ କୂଳେ ଅନେକ ମାଧବ, ବିଷ୍ଣୁ, ଶିବ ଓ ଦେବୀ ମନ୍ଦିର ଦେଖାଯାଏ । ଏତଦ୍ ବ୍ୟତୀତ

ଏହି ଅଞ୍ଚଳରେ ମାତ୍ରାଧିକ ବୌଦ୍ଧ ଓ ଜୈନ ମୂର୍ତ୍ତି ବହୁସ୍ଥାନରେ ସିନ୍ଦୂର ବୋଳା ହୋଇ ଠାକୁରାଣୀ ରୂପେ ପୂଜା ପାଇ ଆସୁଛନ୍ତି । ବହୁବର୍ଷ ତଳେ କନ୍ଦଳପୁର ଗ୍ରାମର ଜନୈକ ଭଦ୍ର ବ୍ୟକ୍ତି ବାରଟି ଜୈନ ମୂର୍ତ୍ତି ସେହି ଗ୍ରାମରୁ ପାଇ କୌଣସି ଶ୍ରେଷ୍ଠ ସରକାରୀ କର୍ମଚାରୀଙ୍କୁ ପ୍ରଦାନ କରିଥିଲେ । ଶୁଣାଯାଏ ତନ୍ମଧ୍ୟରୁ ଏଗାରଟି ପାଟଣା ସଂଗ୍ରହାଳୟ ଓ ଗୋଟିଏ ଓଡ଼ିଶା ସଂଗ୍ରହାଳୟରେ ସୁରକ୍ଷିତ ହୋଇଅଛି । ଏହା କେତେ ଦୂର ସତ୍ୟ ତାହା ଗବେଷକ, ଐତିହାସିକ ବା ପୁରାତତ୍ତ୍ୱବିତ୍ ମାନେ ବ୍ୟକ୍ତ କରି ପାରିବେ ।

ପ୍ରାଚୀନ ପ୍ରାଚୀ ଅର୍ଥାତ୍ କନ୍ଦଳ ନଦୀ କୂଳରେ କନ୍ଦଳ ନଗର ବିରାଜମାନ କରୁଥିଲା ଏହା ନିଃସନ୍ଦେହରେ କୁହାଯାଇପାରେ । କନ୍ଦଳ ନଦୀ ବନ୍ଦରରେ ଉତ୍କଳ ଖଣ୍ଡାୟତ ମାନେ ଋଲୁକ୍ୟ ସୈନ୍ୟ ମାନଙ୍କୁ ଜଳ ଯୁଦ୍ଧରେ ପରାସ୍ତ କରିଥିବାର ଜନଶ୍ରୁତି ଅଛି । ଏଥିରୁ ସ୍ପଷ୍ଟ ଅନୁମେୟ କନ୍ଦଳ ନଗରକୁ ଲାଗି କନ୍ଦଳ ବନ୍ଦର ଏକ ବଶିଷ୍ଟ ନଦୀ ବନ୍ଦର ଥିଲା । କନ୍ଦଳ ପୁରକୁ ଲାଗି ଓଡ଼ପଢ଼ ଏକ ସ୍ଥାନ । ଉତ୍କଳପଡ଼ାରୁ ଓଡ଼ପଢ଼ଅପଭ୍ରଂଶ ହୋଇଛି । ଏହି ସ୍ଥାନରେ ମହାବୀର ଉତ୍କଳ ଖଣ୍ଡାୟତମାନେ ବସତି ସ୍ଥାପନ କରିଥିଲେ । ଓଡ଼ପଢ଼ ସଂଲଗ୍ନ କୁଆପଦା ଗ୍ରାମରେ ପାଇକ ମାନଙ୍କ ଘନ ଜନ ବସତି ଗଢି ଉଠିଥିଲା । ସେହି ଓଡ଼ିଆ ପାଇକ ମାନଙ୍କ ରଣ ହୁଙ୍କାର ଶବ୍ଦରୁ ପ୍ରାଣରେ ଯେ ଆତଙ୍କ ସୃଷ୍ଟି କରୁଥିଲା ସେଥିରେ ସନ୍ଦେହର ଅବକାଶ ନାହିଁ । କୋଳାଗାର ବା କୋଣାର୍କ-ଠାରେ ଶଙ୍ଖୋପୃଳା ମୁହାଣରେ ଯେଉଁ ପ୍ରାଚୀନ ଚେଳିତାଲୋ ବନ୍ଦର ସୃଷ୍ଟି ହୋଇଥିଲା । ତାହା କନ୍ଦଳ ନଗର ଦାନ ବ୍ୟତିରେକ ଅନ୍ୟ କିଛି ନୁହେଁ ।

କାରଣ ପୂର୍ବତନ କନ୍ଦଳ ନଦୀ ପରେ ପ୍ରାଚୀ ଓ ଶଙ୍ଖୋପୃଳା ନାମ ଧାରଣ କରିଥିଲା । କନ୍ଦଳ ନଗରରେ ଦ୍ରାବିଡ଼ କିମ୍ବା ଆର୍ଯ୍ୟ ସଭ୍ୟତା କେବେ ମସ୍ତକ ଉତ୍ତୋଳନ କରିଥିଲା ତାହା କହିବା କଷ୍ଟକର ହେବ ।

କନ୍ଦଳିପୁରରେ ସିନ୍ଦୂର ବୋଳାହୋଇ ପୂଜା ପାଉଥିବା ନାଗପୂଣୀ ଠାକୁରାଣୀ ଏବେ ପୂଲଙ୍ଗ ମୂର୍ତ୍ତି ରୂପେ ପ୍ରମାଣିତ ହେଲେଣି । ମୂର୍ତ୍ତିଟିରୁ ସିନ୍ଦୂର ଛଡ଼ାଇ ଦେବାପରେ ତାହାର ଅସଲ ରୂପ ପଦାରେ ଫୁଟି ବାହାରିଲାଣି । ସଙ୍ଗେ ସଙ୍ଗେ ଠାକୁରାଣୀଙ୍କ ଠାରେ ମଧ୍ୟ ବଳୀପ୍ରଥା ବନ୍ଦକରିଦିଆଯାଇଛି । ମାଛ ମାଂସ ରନ୍ଧନ କରିବା ଉକ୍ତ ସ୍ଥାନରେ ନିଷିଦ୍ଧ ହୋଇଛି । ନାଗପୂଣୀ ଠାକୁରାଣୀଙ୍କ ମୂର୍ତ୍ତିର ମସ୍ତକରେ ପୂର୍ବରୁ କୁହାଯାଉଥିବା ସପ୍ତଫେଣୀ ସର୍ପ ମୂର୍ତ୍ତିକୁ ଲକ୍ଷ୍ୟ-କଲେ ଯେ କୌଣସି ବ୍ୟକ୍ତି ତାହାକୁ ମନସା ମୂର୍ତ୍ତି ବୋଲି ଚିନ୍ତା କରିପାରେ, ମାତ୍ର ଯେହ୍ନ ମୂର୍ତ୍ତି ପୂଲଙ୍ଗ ହୋଇଥିବାରୁ ତାହାକୁ ମନସା ମୂର୍ତ୍ତି ଭାବିବା ଭ୍ରମାତ୍ମକ ଉକ୍ତ ସପ୍ତଫେଣୀ ଛତା ସଦୃଶ ପ୍ରତୀୟମାନ ହେଉଅଛି । ମନେ ହେଉଛି ଏହା କୌଣସି ଜୈନ ତୀର୍ଥଙ୍କର ମୂର୍ତ୍ତି ଅଥବା ନାଥ ଧର୍ମର ଗୁରୁ ଗୋରକ୍ଷ ନାଥଙ୍କର ମୂର୍ତ୍ତି ହୋଇଥିବ । ଗୋରକ୍ଷ ନାଥଙ୍କର ମୂର୍ତ୍ତି ବୋଲି କେତେକ ପ୍ରାମାଣିକ ତଥ୍ୟର ସୂଚନା ନମିଳିଲେ ସୁଦ୍ଧା କିମ୍ବଦନ୍ତୀ, ସ୍ଥାନର ଅବସ୍ଥିତି ଇତ୍ୟାଦିର ଅନୁମାନ ଦୃଢ଼ୀଭୂତ ହେବାର ଯଥେଷ୍ଟ ସମ୍ଭାବନା ରହିଛି ।

ଖାରବେଳଙ୍କ ରାଜଧାନୀ ତୋଷାଳି ନଗର ପ୍ରାଚୀନ କନ୍ଦଳ ଅର୍ଥାତ ପ୍ରାଚୀନ ପ୍ରାଚୀ ନଦୀ କୂଳରେ ଥିଲି । କେତେକ ଐତିହାସିକଙ୍କ ମତରେ ପ୍ରାଚୀ କୂଳସ୍ଥ ଭୁଜସୀପୁରକୁ ତୋଷାଳି କୁହାଯାଉଥିଲି । ତୋଷାଳି ନଗର କାକଟପୁର କନ୍ଦଳପୁର ଠାରୁ ଭୁବନେଶ୍ୱର ନିକଟସ୍ଥ ଧଉଳି ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିବା ଅନୁମାନ କରାଯାଏ । ଭୁଜସୀପୁର ଠାରେ ଖାରବେଳଙ୍କ ସଭା ମଣ୍ଡପ ବର୍ତ୍ତମାନ ମଧ୍ୟ ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଅଛି । କନ୍ଦଳପୁର ଠାରୁ ୭ ମାଇଲ ବା ତିନି କୋଶ ପଶ୍ଚିମରେ ଭୁଜସୀପୁର ଗ୍ରାମ ବିଦ୍ୟମାନ । କନ୍ଦଳପୁରର ଦୁଇମାଇଲ ଦୂରରେ ଉତ୍ତର ଦିଗରେ କାଠଯୋଡ଼ି ନଦୀ ଦେବୀ-ନାମ ଧାରଣ କରି ବଙ୍ଗୋପ ସାଗର ଅଭିମୁଖରେ କ୍ଷିପ୍ର ଗତିରେ ପ୍ରବାହିତ ହେଉଅଛି । ଅଧମାଇଲ ଦୂରରେ ଗ୍ରାମର ଦକ୍ଷିଣ ଦିଗରେ ପୁଣ୍ୟ ତୋୟା

ପ୍ରାଚୀ ବଙ୍ଗୋପ ସାଗର ସ୍ରୋତରେ ନିଜର ସ୍ରୋତ ମିଳାଇ ଦେବା ପାଇଁ ସତତ ବ୍ୟଗ୍ର । ଠିକ୍ ଗ୍ରାମ ସୀମାକୁ ଲାଗି ପ୍ରାଚୀ କେନାଲ ଦକ୍ଷିଣ ଦିଗରେ ପୂର୍ବାଭିମୁଖୀ ହୋଇ ବକ୍ର କରିଛି ଏବଂ ଗ୍ରାମର ଉତ୍ତର ଦିଗରେ କ୍ଷୁଦ୍ର ନାଳଟିଏ ମୂଳ କେନାଲରୁ ଆତ୍ମ ପ୍ରକାଶ କରି ସେହିପରି ପୂର୍ବ ଗାମିନୀ ହୋଇଛି । କେନାଲ ବନ୍ଧରେ ଲଗାଯାଇଥିବା ନାରିକେଳ ବୃକ୍ଷ ଗୁଡ଼ିକ କେନାଲର ଶୋଭା ଦ୍ୱିଗୁଣିତ କରେ ।

ଉତ୍ତରପଟ କ୍ଷୁଦ୍ର ନାଳକୁ ଲାଗି ପ୍ରତ୍ୟେକ ଘରର ବାଡ଼ିଆଡ଼େ କ୍ଷୁଦ୍ର ପୁଷ୍କରିଣୀ ବା ଗାଡ଼ିଆ ବିଦ୍ୟମାନ । ଅନୁମାନ କରାଯାଏ ବନ୍ୟା ଦାଉରୁ ଜନସାଧାରଣଙ୍କୁ ରକ୍ଷା କରିବା ପାଇଁ ସେ ସବୁ ଗାଡ଼ିଆର ସୃଷ୍ଟି କରାଯାଇଥିଲା । ଗାଡ଼ିଆ ଗୁଡ଼ିକର ନାମ କରଣରେ ଯଥାର୍ଥତା ରହିଛି । ସେ ଗୁଡ଼ିକ ହେଲା- ବେଲ ଗାଡ଼ିଆ, କାଳି କୋଇଲି ଗାଡ଼ିଆ, ସନମନା ଗାଡ଼ିଆ, ଠୋଲକ ଗାଡ଼ିଆ ମହିସାହି ଗାଡ଼ିଆ, ମାମୁଙ୍କ ଗାଡ଼ିଆ, କାନୁନଗୋ ସାଇ ଗାଡ଼ିଆ, ତୁଳସୀ ଅପା ଗାଡ଼ିଆ, କେଳାଙ୍କ ଗାଡ଼ିଆ ଓ ନବାଙ୍କ ଗାଡ଼ିଆ । ନବ ଓ କେଳୁନାମ ଡାକ ଦୁଇଜଣ ଟିଲ୍ଙ୍କ ନାମରେ ଯେଉଁ ଗାଡ଼ିଆ ସୃଷ୍ଟି ହୋଇଥିଲା ତାହା ଆଧୁନିକ କହିଲେ ଚଳେ । ତା ଠାରୁ ଟିକିଏ ପ୍ରାଚୀନ ମହିସାହି ଗାଡ଼ିଆ ତୁଳସୀ ଅପାଗାଡ଼ିଆ, ମାମୁଙ୍କ ଗାଡ଼ିଆ, ଏତଦ୍ ବ୍ୟତିରେକ କାନୁନଗୋ ସାଇ ଗାଡ଼ିଆ ମଧ୍ୟ ଆଧୁନିକ ଶ୍ରେଣୀ ଅନ୍ତର୍ଭୁକ୍ତ । ଗ୍ରାମର ପଶ୍ଚିମ ଦିଗରେ ଧାନୀ ଗାଡ଼ିଆ ବା ଧାଙ୍ଗ ଗାଡ଼ିଆ ବିଦ୍ୟମାନ । କନ୍ଦଳପୁର ପୂର୍ବେ କୌଣସି ରାଜବଂଶକୁ ଅଙ୍କରେ ଧାରଣ କରିଥିଲା । ନଚେତ୍ ଧାଙ୍ଗ ମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଗାଡ଼ିଆ ସୃଷ୍ଟି ହୋଇ ନଥାନ୍ତା । ଧାଙ୍ଗ ଗାଡ଼ିଆର ଚିହ୍ନ ରହିଛି । ସେହିପରି ରାଜା ରାଣୀଙ୍କ ପାଇଁ ଯେଉଁ ଭିନ୍ନ ଭିନ୍ନ ଗାଡ଼ିଆ ସୃଷ୍ଟି ହୋଇଥିବ ତାହା କେଉଁ ଠାରେ ଥିଲା ଏବେ କହିବା ଅସମ୍ଭବ । କାରଣ ସେ ଗୁଡ଼ିକର ଚିହ୍ନବର୍ଣ୍ଣ ପରିଦୃଷ୍ଟ ହୁଏ ନାହିଁ । ବର୍ତ୍ତମାନ ବେଲଗାଡ଼ିଆ, ସନମନା ଗାଡ଼ିଆ, କାଳି କୋଇଲି ଗାଡ଼ିଆ ଓ ଠୋଲକ ଗାଡ଼ିଆ କଥା ବିଚାର କରାଯାଉ ।

ବେଲ୍ ଗାଡ଼ିଆର ଚତୁର୍ଦ୍ଦିଗରେ ଅସଂଖ୍ୟ ବେଲଗଛ ଥିଲା । ତେଣୁ ଉକ୍ତ ଗାଡ଼ିଆର ନାମ ବେଲ ଗାଡ଼ିଆ ହୋଇଛି । ବନ୍ୟା ସମୟରେ ଏହି ଗାଡ଼ିଆ ମତ୍ସ୍ୟ ଓ କୁମ୍ଭୀର ମାନଙ୍କର ଲୀଳାସ୍ଥଳୀ ଥିଲା । ଏହି ଗାଡ଼ିଆରେ ସ୍ନାନ କରିବାକୁ ବନ୍ୟା ସମୟରେ ଲୋକମାନେ ଭୟ କରୁଥିଲେ । କୋଇଲି, ଶୁଆ, ଶାରୀ, କୁମ୍ଭାଟୁଆ, ବଣି, କପୋତ, କପୋତୀ, ମୟୂର, ମୟୂରୀ ପ୍ରଭୃତି ପକ୍ଷୀ ମାନଙ୍କ କଳରବରେ ଏବେ କନ୍ଦଳନଗର ମୁଖରିତ ହେଉଥିଲା । କାଳ କୋଇଲି ଗାଡ଼ିଆ ହୁଡ଼ାରେ ଲଗାଯାଇଥିବା ଆମ୍ର ବୃକ୍ଷ ଗୁଡ଼ିକ କମନୀୟ ଶୋଭା ଧାରଣ କରି ଜନମନ ହରଣ କରୁଥିଲେ । ବସନ୍ତ ସମୟରେ କାଳ କୋଇଲିର କୁହୁତାନ ଉକ୍ତ ଆମ୍ର ବୃକ୍ଷ ଗୁଡ଼ିକରେ ଜନ ମାନସ ରଞ୍ଜନ କରିବାରେ ସ୍ଫୁର୍ତ୍ତି ପ୍ରଦର୍ଶନ କରୁନଥିଲା । ଏହି ସବୁ କାରଣରୁ କାଳ କୋଇଲି ଗାଡ଼ିଆ ନିଜର ନାମ ସାର୍ଥକ କରିଛି । ପ୍ରବାଦ ଅଛି ଶାଳ ମହାନ୍ତି ନାମଧେୟ ଜନୈକ ବ୍ୟକ୍ତି କୌଣସି ଜମିଦାରଙ୍କ ତହସିଲଦାର ଥିଲେ । ସେ କନ୍ଦଳପୁରର ପ·ତାକ ପଂଚାଳିଙ୍ଗ ବା କେଉଁଠାରୁ ଆସି କନ୍ଦଳପୁରରେ ବାସକଲେ ସେ ସମ୍ପର୍କରେ ଇତିହାସ ନୀରବ । କେବେ ଶାଳ ମହାନ୍ତି ଅବା ତାଙ୍କ ପୂର୍ବ ବଂଶଜ ଶ୍ରୀକ୍ଷେତ୍ର ଅର୍ଥାତ୍ ପୁଣ୍ୟ ଧାମରୁ ସ୍ୱପ୍ନାଦେଶ ପାଇଁ କନ୍ଦଳପୁରକୁ ଆସିଥିଲେ ବୋଲି ବୁଢ଼ା ବୁଢ଼ୀ ଲୋକେ କହନ୍ତି । ଥରେ ଶାଳ ମହାନ୍ତି ବନ୍ୟା ସମୟରେ କଦଳୀ ଭେଳା ଉପରେ ବସି ଗାଡ଼ିଆ ଗୁଡ଼ିକ ଉପରେ ଆସୁଥିଲେ । ବେଲ-ଗାଡ଼ିଆର ଛୁଟ ଶର ସମାନ ଦୁଇଟି କୁମ୍ଭୀର ଗହଣରେ କଦଳୀ ଭେଳା ଭସିଗଲା ମଧ୍ୟ ଉକ୍ତ କୁମ୍ଭୀର ଦ୍ୱୟ ତାଙ୍କୁ ଆକ୍ରମଣ କରିନଥିଲେ । ଶାନ୍ତ କଳା ଡମ୍ବର ପରି କାଳକୋଇଲି ଗାଡ଼ିଆର ଜଳ ବନ୍ୟା ସମୟରେ ଉତ୍ଫୁଲ୍ଲ ହୋଇ ଉଠିଥିଲେ ମଧ୍ୟ କଦଳୀ ଭେଳାଟି ଆୟାସ ସହକାରେ ଉକ୍ତ ଗାଡ଼ିଆ ଅତିକ୍ରମ କରି ନିକଟସ୍ଥ ଅନ୍ୟ ଗୋଟିଏ ଗାଡ଼ିଆରେ ପ୍ରବେଶ କଲା । ଗୁହୁଁ ଗୁହୁଁ କଦଳୀ ଭେଳା ଉପରକୁ ଗୋଟିଏ ଗୋମୁହାଁ କୁମ୍ଭୀର ହଠାତ୍ ଆସି ଶାଳ-ମହାନ୍ତିଙ୍କୁ ପାଟିରେ ଧରି ପହଁରିବାକୁ ଲାଗିଲା । ସେ ସମୟରେ କୁମ୍ଭୀର

ହାବୁଡ଼ରୁ ରକ୍ଷା ପାଇବାର ଅନ୍ୟ କୌଣସି ଉପାୟ ନଦେଖି ମାଳ ମହାନ୍ତ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରି କହିଲେ "ହେ ଭଗବାନ ମୋତେ ଯଦି କୁମ୍ଭୀର ଛାଡ଼ିଦିଏ ମୁଁ ତାକୁ ଦଣ୍ଡେ ଦିନ ପର୍ଯ୍ୟନ୍ତ ଦୈନିକ ଗୋଟିଏ ଛେଳି ଖାଇବାକୁ ଦେବି" ଆଶ୍ଚର୍ଯ୍ୟର କଥା ବିରାଟ ଗୋମୁହାଁ କୁମ୍ଭୀର ମହାନ୍ତ ମହାଶୟଙ୍କୁ ଚାହିଁ ଚାହିଁ ଛାଡ଼ି ଦେଇ ଜଳ ମଧ୍ୟରେ କେଉଁ ଆଡ଼େ ଉଭ- ନହେଲା ତାହା ପରମେଶ୍ୱରଙ୍କୁ ଜଣା । ମାତ୍ର ମାଳ ମହାନ୍ତ ତାଙ୍କର ପ୍ରତିଶ୍ରୁତି ପାଳନ କରିଥିଲେ । ଛେଳି ଜଳ ମଧ୍ୟରେ ଅଦୃଶ୍ୟ ହୁଏ ସତ, ମାତ୍ର ଛେଳି କିମ୍ବା କୁମ୍ଭୀରର ସ୍ୱରୂପ କେହି ଦେଖିବାକୁ ପାଉନଥିଲେ । କୁମ୍ଭୀର ମାଳ ମହାନ୍ତ ଙ୍କ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାରୁ ଉକ୍ତ ଗାଡ଼ିଆର ନାମ ସନମାନ ଗାଡ଼ିଆ ଅଟେ । ମାତ୍ର ଅପଭ୍ରଂଶ ହୋଇ ତାହାର ନାମ ଏବେ ସନମନା ଗାଡ଼ିଆ ରୂପେ ପରିଚିତ । ଟୋଲକ ବୃକ୍ଷରେ ଟୋଲକ ଫଳେ । ଟୋଲକ ଗଜା ଖାଇବାକୁ ଭଲଲାଗେ । କୌଣସି ଗାଡ଼ିଆର ଚତୁର୍ଦ୍ଦିଗରେ ମାତ୍ରାଧିକ ଟୋଲକ ବୃକ୍ଷ ଥିବାରୁ ଉକ୍ତ ଗାଡ଼ିଆର ନାମ ଟୋଲକ ଗାଡ଼ିଆ ହୋଇଅଛି । କନ୍ଦଳପୁର ଗ୍ରାମର ଚତୁର୍ଦ୍ଦିଗରେ ତାଳ ତମାଳ ପାଟେଳି ବୃକ୍ଷ ବିରାଜିତ ହୋଇ ଗ୍ରାମର ଶୋଭା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଜଙ୍ଗଲ ମଧ୍ୟରେ ଗ୍ରାମର ପୂର୍ବ ସୀମାନ୍ତରେ ଗୋଟିଏ ବଡ଼ ପୋଖରୀଥିଲା । ଏହି ପୋଖରୀ କନ୍ଦଳ ନଦୀର ଅଂଶ ବିଶେଷ ବୋଲି ଲୋକେ କହନ୍ତି । ଏଥିରେ ଧୋବା ମାନେ ନଗରେ ବାସୀ ଓ ରଜା ରାଣୀଙ୍କ ପରିଧେୟ ବସ୍ତ୍ର ସଫା କରୁଥିଲେ । ଗ୍ରାମରେ ଅନ୍ୟ ଯେଉଁ ବୃହତ୍ ଜଳାଶୟଟି ରହିଛି ତାହାର ନାମ ନୂଆ ପୋଖରୀ ଅତ୍ୟାଧୁନିକ ଢଙ୍ଗରେ ଏହି ଜଳାଶୟଟି ଗ୍ରାମର ଜନୈକ କଣ୍ଟ୍ରାକ୍ଟର ମାୟାଧର କାନୁନ୍ ଗୋଙ୍କ ଅନଶ୍ୱର କୀର୍ତ୍ତି । ମାୟାଧର କାନୁନଗୋ ଜଣେ ସଚ୍ଚରିତ୍ର, ନିଷ୍ଠାପର ସମାଜ ସେବୀ ପରୋପକାରୀ ବ୍ୟକ୍ତିଥିଲେ । କନ୍ଦଳପୁର ଓ ବାଙ୍କଟପୁର ଅଞ୍ଚଳରେ ସେ ଜଣେ ବୁଦ୍ଧିମାନ ଓ ବିଶିଷ୍ଟ ଲୋକ ହିସାବରେ ବେଶ୍ ଜଣା ଶୁଣା । ଏକଥା ଯେ କୌଣସି ବ୍ୟକ୍ତି ମୁକ୍ତ କଣ୍ଠରେ ସ୍ୱୀକାର କରିବ । ଗ୍ରାମର ରାସ୍ତା, ପୁଷ୍କରିଣୀ, କୂପ, ପ୍ରାଥମିକ ବିଦ୍ୟାଳୟ ତାଙ୍କର କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ନୂଆ ପୋଖରୀ ଅର୍ଥାତ୍ ନୂତନ ପୁଷ୍କରିଣୀ ଗୋଟିଏ ଆଦର୍ଶ ପୁଷ୍କରିଣୀ । ଏହା ସୁନ୍ଦର ଅଟେ । ଗ୍ରାମର ଆବାଳ ବୃଦ୍ଧ ବନିତା ଏଥିରେ ସ୍ନାନ କରନ୍ତି । ନୀଳ ରକ୍ତ କୋକନଦ ସମ୍ବଳିତ ପଙ୍କଜର ଅନବଦ୍ୟ ରୂପ ମାଧୁରୀ ପୁଷ୍କରିଣୀର ଶୋଭା ବର୍ଦ୍ଧନ କରେ । ଏହାର ଚତୁର୍ଦ୍ଦିଗରେ ତାଳ ଓ ଖଜୁରୀ ବୃକ୍ଷ ଗୁଡ଼ିକର ଶୋଭା ଅତ୍ୟନ୍ତ ମନୋରମ । ପ୍ରତିବର୍ଷ ଏହି ପୋଖରୀରୁ ବଡ଼ ବଡ଼ ମାଛ ଧରାଯାଇ ଗ୍ରାମବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଏ ।

ଦିନ ଥିଲା ଯେତେବେଳେ କନ୍ଦଳ ନଗର ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଏହି ସ୍ଥାନରେ କେତେଥର ଜନବସତି କାଳର କଠିନ ଗର୍ଭରେ ବିଲୀନ ହୋଇଅଛି ତାହାର ହିସାବ କେହି ଦେଇ ପାରିବେ ନାହିଁ ।

କନ୍ଦଳନଗରକୁ ଲାଗି ଯେଉଁ ଜଙ୍ଗଲ ଥିଲା ତାହା ତିନି ଭାଗରେ ବିଭକ୍ତ । ପଶ୍ଚିମ ଜଙ୍ଗଲ ର ନାମ ମୟୂରଲଞ୍ଜି, ପୂର୍ବ ବ୍ୟାଘ୍ରଲଞ୍ଜି ଓ ମଧ୍ୟ ସ୍ଥଳୀ ହାଡ଼ଖିଆ ମାଳ । ପ୍ରେତାତ୍ମା ମାନଙ୍କର ବାସସ୍ଥଳ ଥିଲା, କୁହନ୍ତିଲେ ଅତ୍ୟୁକ୍ତି ହେବନାହିଁ । ଏହି ସ୍ଥାନରେ ଶତ ଶତ ବାମ୍ବି (ଇଠା କୁଅ) ଭୂଗର୍ଭରେ ସମାଧି ନେଇଛନ୍ତି; ଅଳ୍ପ କେତେକ ବାମ୍ବି ମସ୍ତକ ଉତ୍ତୋଳନ କରି ନିଜ ନିଜର ପୂର୍ବ ପରିଚୟ ପ୍ରଦାନ କରିବାକୁ ସନ୍ତୁଷ୍ଟ ନୟନରେ ଚାହିଁ ରହିଛନ୍ତି, ଏକଥା କେହି ଅସ୍ୱୀକାର କରି ପାରିବେ ନାହିଁ । ଏସବୁ ଦେଖିଲେ କିଏ ନ କହିବ ଯେ ଆଜିର କନ୍ଦଳପୁର କାଲିର କନ୍ଦଳନଗର ର ରୂପାନ୍ତର ମାତ୍ର । ଅଷ୍ଟାଦଶ ହାଡ଼ଖିଆ ମାଳରେ ବ୍ୟାଘ୍ର ଭଲ୍ଲୁକ ପ୍ରଭୃତି ହିଂସ୍ରଜନ୍ତୁ ମାନବ ଶୀକାରରେ ଲିପ୍ତ ଥିଲେ । ତା ନହୋଇଥିଲେ ଗଦା ଗଦା ହାଡ଼ ପଡ଼ି ଜଙ୍ଗଲର ନାମ ହାଡ଼ଖିଆ ନ ହୋଇନଥାନ୍ତା । ଆଜି ଯେତିକି ତୁମ୍ଭେ ନାନା ଜାତିର ବୃକ୍ଷଲତା, ପଶୁପକ୍ଷୀ, ସରୀସୃପ, ବ୍ୟାଘ୍ର, ଭଲ୍ଲୁକ ଇତ୍ୟାଦି ଜଙ୍ଗଲର ଶୋଭା ବର୍ଦ୍ଧନ କରି ସହାୟକ ହୋଇ ଆସୁଥିଲେ । ଆମ୍ର, ପନସ, ନାରିକେଳ, ତାଳ, ତମାଳ, ଖଜୁରୀ ପୂରିତରୁ (ପୁନାଗ) ପରି ଶୋଭିତ କନ୍ଦଳପୁର ଅର୍ଥାତ୍ କନ୍ଦଳନଗରେ

ପ୍ରକୃତିର ଗନ୍ଧାଗର ସଦୃଶ ପ୍ରଶସ୍ତ ମାନ ହେଉଥିଲା । ଗ୍ରାମର ପଶ୍ଚିମ ଜଙ୍ଗଲରେ ବହୁ ବ୍ୟାଘ୍ର ଥିବାରୁ, ତାହାକୁ ବାଘ ଲଞ୍ଜି ଓ ପୂର୍ବରେ ଅନେକ ମୟୂର ମୟୁରୀ ଥିବାରୁ ତାହାକୁ ମୟୂର ଲଞ୍ଜି କୁହାଯାଉଥିଲା । ବ୍ୟାଘ୍ର ଗର୍ଜ୍ଜନ, ପକ୍ଷୀ କୂଜନ ମୟୂରୀ ନର୍ତ୍ତନ ନଗର ବାସୀଙ୍କ ପ୍ରାଣରେ ଯୁଗପତ୍ ହର୍ଷ ବିଷାଦର ରେଖାପାତ କରୁଥିଲା । ଗ୍ରାମର ପୂର୍ବ ଦିଗରେ ଗୋଟିଏ ପ୍ରକାଣ୍ଡ ଓଦ୍ଦାଳ ଲଗା ବଟଗଛ ଏବଂ ଏକ ସରଳ ରେଖାରେ ପଶ୍ଚିମ ମୁଣ୍ଡରେ ମଧ୍ୟ ଆଉ ଏକ ତଦ୍ରୂପ ବରଗଛ ବିଦ୍ୟମାନ ଥିବା ସଙ୍ଗେ ସଙ୍ଗେ ମାଳଙ୍କସାଇ ସମ୍ମୁଖରେ ଗୋଟିଏ ବକୁଳ ବୃକ୍ଷ ବହୁ ପ୍ରାଚୀନ କାଳରୁ ରହି ଆସିଅଛି, ଲେଖକ ସେ ବକୁଳ ବୃକ୍ଷରେ ଦଶଅବତାର ମୂର୍ତ୍ତିର ସନ୍ଧାନ ପାଇ ଶୀଘ୍ର ସେହି ବୃକ୍ଷ ମୂଳରେ ମଣ୍ଡପ ନିର୍ମାଣ କରିବା ପାଇଁ ଗ୍ରାମର ଯୁବକ ମାନଙ୍କୁ ଅନୁରୋଧ କରିଥିଲେ । ଏବେ ଗ୍ରାମର ଯୁବକ ସଂଘ ସେଠାରେ ମଣ୍ଡପ ପ୍ରସ୍ତୁତ କରିଛି ।

ଉକ୍ତ ବକୁଳ ବୃକ୍ଷଟି କେତେ ହଜାର ବର୍ଷ ତଳର ହେବ ତାହା କେହି ଆଗରୁ କହିନାହାନ୍ତି ବା ଆଜି କାଲି କେହି କହି ପାରିବେ ନାହିଁ । କୌଣସି ଦେବୀ ଉକ୍ତ ବକୁଳ ବୃକ୍ଷକୁ ଆଶ୍ରୟ ସ୍ଥଳ କରିଛନ୍ତି । ଚୈତ୍ର ମାସରେ ଉକ୍ତ ବୃକ୍ଷ ମୂଳେ ପଚ୍ଛେଇ ପୂଜା ବା ମଙ୍ଗଳା ପୂଜା ମଙ୍ଗଳ ବାଦ୍ୟବାଦନ କରାଯାଏ । ଏତଦ୍ ବ୍ୟତୀତ ଗୀତା ଭାଗବତ ପାରାୟଣ, ମହାଭାରତ ରାମାୟଣ ପାଠ କାର୍ତ୍ତିକ ମାସରେ କାର୍ତ୍ତିକ ମହାତ୍ମ୍ୟ ପଠନ ଦ୍ୱାରା ଅଧିକାଂଶ ସମୟରେ ଗ୍ରାମର ବାୟୁମଣ୍ଡଳ ପ୍ରତିଧ୍ୱନିତ ଓ ତରଙ୍ଗାୟିତ ହୁଏ । ଖାଲି ସେତିକି ନୁହେଁ ସେହି ବକୁଳ ବୃକ୍ଷ ମୂଳରେ ଅଧିକାଂଶ ସମୟରେ ନାମ ସଂକୀର୍ତ୍ତନ ଓ ଅଷ୍ଟ ପ୍ରହରୀ ଇତ୍ୟାଦି ହୁଏ । ଗ୍ରାମର ଶେଷ ମୁଣ୍ଡରେ କନ୍ଦଳପୁର କାକଟପୁର ରାସ୍ତାରେ ମୂଳ ଦିଙ୍କନାଳ ନିକଟରେ ଗୋଟିଏ ବରଗଛ ବିଦ୍ୟମାନ । ଏହାକୁ ରେଖାବର କହନ୍ତି । କାରଣ ରେଖା ଦେବୀ ନାମ୍ନୀ ଜଣେ ଧର୍ମପ୍ରାଣ ମହିଳା ବୃକ୍ଷଟି ସେହି ସ୍ଥାନରେ ରୋପଣ କରିଥିଲେ । ଏବଂ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ ସେ ଏହି ବୃକ୍ଷକୁ ପୂଜାକରି ଆସୁଥିଲେ । ରେଖାଦେବୀ କାକଟପୁର

ମା ମଙ୍ଗଳାଙ୍କର ପରମ ପୂଜାରଣୀ ଥିଲେ । ସେ ପ୍ରତିଦିନ ମା ମଙ୍ଗଳାଙ୍କ ମନ୍ଦିରକୁ ଯାଉଥିଲେ । ସେଠାରେ ସେ ଠାକୁରାଣୀଙ୍କୁ ଫୁଲ ପାଣି ଭୋଗ ଇତ୍ୟାଦି ସମର୍ପଣ କରୁଥିଲେ । ଗ୍ରାମର ଭଗବତ୍ ଟୁଙ୍ଗୀ ନିର୍ମାଣ ରେଖାଦେବୀଙ୍କର ଅନ୍ୟତମ କୀର୍ତ୍ତି । ସେହି ଭଗବତ ଠାକୁର ବର୍ତ୍ତମାନ ମାଳଙ୍କ ସାଇ ଅଧୀନରେ । ରେଖା ଦେବୀଙ୍କ ସ୍ୱାମୀ ବାଉରିବନ୍ଧୁ ମହାନ୍ତି ଜଣେ ଆଦର୍ଶ ପ୍ରାଥମିକ ଶିକ୍ଷକ ରୂପେ କାକଟପୁର ଅଞ୍ଚଳରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଉଭୟ ସ୍ତ୍ରୀ ପୁରୁଷ ଅତ୍ୟନ୍ତ ଶିଶୁ ବତ୍ସଳ ଥିଲେ । କନ୍ଦଳପୁରର ପଶ୍ଚିମ ଅଂଶ ସାଇର ନାମ ପାଟ ସାଇ । ରାଜାଙ୍କର ସବୁ ପାଟ ମନ୍ତ୍ରୀ ଅଧସ୍ତନ କର୍ମଚାରୀ ରୂପେ କାର୍ଯ୍ୟ କରନ୍ତି । ପାଟ ମାନେ ରାଜଦରବାରରେ ସ୍ଥାନ ପାଉଥିଲେ । ତମ୍ବା ପାତିଆ ସନନ୍ଦରୁ ଜଣାପଡ଼ୁଛି କୌଣସି ରାଜା ଦେବଗ୍ରାମ ନାମକ ଗ୍ରାମ ବ୍ରାହ୍ମଣ ମାନଙ୍କୁ ଦାନ କରିଥିଲେ । କନ୍ଦଳପୁରରେ ଧାଡ଼ି ଧାଡ଼ି ଗାଡ଼ିଆ ଦକ୍ଷିଣକୁ ବ୍ରାହ୍ମଣ ପଡ଼ିଆ ବୋଲି ଏକ ଡ଼ିହ ରହିଅଛି । ଦେବ ଗ୍ରାମ ଶାସନ ଅଦୃଶ୍ୟ ହେଲେ ମଧ୍ୟ ତାହା କନ୍ଦଳପୁର ବ୍ୟତୀତ ଅନ୍ୟ କିଛି ନୁହେଁ । କନ୍ଦଳପୁର ଗ୍ରାମରେ ମାଟି ଖୋଳୁ ବରଜ ପୋତାଡ଼ଳୁ ପ୍ରାଚୀନ ଚଷୁ ପୋଡ଼ା ଇଟା, ପ୍ରାଚୀନ ଯୁଗର କଉଡ଼ି କେତେ ପ୍ରକାର ଓ ଗୋଟିଏ ଧାତବ ପଦାର୍ଥ ଇଟାର କବର ମିଳିଥିଲା । ସେହି କବରରେ-ଗୋଟିଏ ମୃତ ମନୁଷ୍ୟର ଅସ୍ଥି ପଞ୍ଜର ସଦୃଶ ମିଳିଥିବାର ଜଣାଯାଏ । ରାଧାଚରଣ ପଣ୍ଡାଙ୍କ ପ୍ରାଚୀ ନଦୀର ଐତିହାସିକ ବିଭବ ପୁସ୍ତକ ଦ୍ରଷ୍ଟବ୍ୟ । ବ୍ରାହ୍ମଣ ପଡ଼ିଆ ଏକ ପ୍ରସିଦ୍ଧ ସ୍ଥାନ ଏଥିରୁ ଅନୁମାନ କରିଯାଏ ଜୈନ ବୌଦ୍ଧ ମାନଙ୍କ ପରେ ଦାନୁଆ ବ୍ରାହ୍ମଣ ମାନେ କନ୍ଦଳପୁରରେ ବାସ କରୁଥିଲେ । ବର୍ତ୍ତମାନ ଉକ୍ତ ବ୍ରାହ୍ମଣ ପଡ଼ିଆରେ ମାଳଙ୍କ ସାଇର ଲୋକମାନେ ବାସ କରୁଅଛନ୍ତି । ଧାନ କୋଠି ବୋଲି ଗୋଟିଏ ସ୍ଥାନ ଗାଁ ମଝିରେ ଅଛି । ଏହା କୌଣସି ରାଜା ବା ଜମିଦାରଙ୍କ ଭଣ୍ଡାର ଘର ଥିଲା । ବର୍ତ୍ତମାନ ସେହି ସ୍ଥାନରେ ଟାଟା କମ୍ପାନୀ ଦ୍ୱାରା ପୁରସ୍କୃତ ଶ୍ରୀ କେଶବ ଚନ୍ଦ୍ର ମହାନ୍ତି ଗୃହ ନିର୍ମାଣ କରିଅଛନ୍ତି । କେଶବ ଚରଣ ମହାନ୍ତି ବହୁ ବର୍ଷ ଟାଟା କମ୍ପାନୀରେ ଗୃକେଶ କରି କମ୍ପାନୀ ଦ୍ୱାରା ପୁରସ୍କୃତ ହୋଇ

ଗ୍ରାମର ମୁଖ ଟିରେ ବନ ପାଇଁ ଉଜ୍ଜ୍ୱଳ କରିଛନ୍ତି ଏଥିରେ ସନ୍ଦେହର ଅବକାଶ ନାହିଁ । ଧାନ କୋଠି ସାମନାକୁ ଥିବା ଗୋଟିଏ ସ୍ଥାନର ନାମ ଠାକୁର ବାଡ଼ । ବୋଧହୁଏ ଏହି ସ୍ଥାନରେ କୌଣସି ପ୍ରାଚୀନ ମନ୍ଦିର ମାଟିତଳେ ପ୍ରୋଥିତ ହୋଇଅଛି । ସେହି ମନ୍ଦିର ମଧ୍ୟରେ ଥିବା ମୂର୍ତ୍ତି ଗୁଡ଼ିକ ଖନନ ପ୍ରକ୍ରିୟାରେ ଆତ୍ମ ପ୍ରକାଶ କଲେ ଇତିହାସର ଅନ୍ଧକାର ଭିତରେ ଝାପସା ଆଲୋକରେ କନ୍ଦଳନଗର ନିଶ୍ଚିତ ଭାବେ ଉଦ୍‌ଘାଟିତ ହୋଇ ପାରନ୍ତା । ଅଧୁନା କନ୍ଦଳପୁରରେ ଗୋଟିଏ ବାଳିକା ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଅଛି । ତାହା କାକଟପୁର ଉଚ୍ଚ ବାଳିକା ବିଦ୍ୟାଳୟ ରୂପେ ଖ୍ୟାତି ଅର୍ଜନ କରିଅଛି କାରଣ ଏହା କାକଟପୁର ଥାନାର ସର୍ବ ପ୍ରଥମ ବାଳିକା ବିଦ୍ୟାଳୟ । ପ୍ରଧାନ ଶିକ୍ଷୟିତ୍ରୀ ରୂପେ ଶ୍ରୀମତୀ ପ୍ରେମଲତା କାନୁନ ଗୋ ଉକ୍ତ ବିଦ୍ୟାଳୟରେ କିଛି ବର୍ଷ ଧରି କାର୍ଯ୍ୟ କରି ଆସୁଛନ୍ତି । ଶ୍ରୀମତୀ କାନୁନ ଗୋ ଗ୍ରାମର ବିଶିଷ୍ଟ ବ୍ୟକ୍ତି ମାୟାଧର କାନୁନ ଗୋଙ୍କ ତୃତୀୟା କନ୍ୟା । ତାଙ୍କର ଦେଶ ପ୍ରୀତି ଓ ସ୍ୱଦେଶ ଭାବନା ରହିଛି । ନଚେତ୍ ସେ ଅବିବାହିତା ଜୀବନରେ ଗ୍ରାମର ସେବା କରିବା ପାଇଁ ସ୍ୱାର୍ଥକୁ ଜଳାଞ୍ଜଳି ଦେବାକୁ ଉତ୍କଣ୍ଠା ପ୍ରକାଶ କରି ନଥାନ୍ତେ ।

କାନୁନଗୋ ବଂଶର କୌଣସି ବ୍ୟକ୍ତି ଜଟଣେ ପୁର, ଗୋବିନ୍ଦପୁର ଅଥବା ଶାଳଗାଁ ଅଞ୍ଚଳରୁ ଆସି କନ୍ଦଳପୁରରେ ବସ ବାସ କରିଥିଲେ ବୋଲି ଅନୁମାନ କରାଯାଏ । ଏହି ବଂଶ ଗ୍ରାମରେ ଗୋଟିଏ ପ୍ରତିଷ୍ଠିତ ପରିବାର । କାନୁନ ଗୋ ଉପାଧି ଚକଲା ବା ଚକଡ଼ା କାନୁନ ଗୋ ସ୍ୱକେଶରୁ ଉତ୍ପତ୍ତି ହୋଇଛି । ମହାନ୍ତି ଉପାଧି ଧାରୀ କେତେ ଘର କାନୁନ ଗୋ ବଂଶର କୁଟୁମ୍ବ ଥିବାରୁ ଜଣାଯାଏ । କାନୁନ ଗୋ ମାନେ ପୂର୍ବେ ମହାନ୍ତି ସଂଜ୍ଞା ଧାରୀଥିଲେ ଏବଂ ପରେ ସେମାନେ ସରକାରୀ ଦପ୍ତରକୁ ନିଜ ନାମ ସହିତ ସଂଯୋଗ କରି ମହାନ୍ତି ପରିବର୍ତ୍ତେ କାନୁନ ଗୋ ନାମରେ ନାମିତ ହେଲେ । ଏହି ଚକଲା କାନୁନ ଗୋ ମାନଙ୍କର ଇଂରେଜ ମାନଙ୍କ ଅମଳରେ ଯଥେଷ୍ଟ ଆଧିପତ୍ୟ ଥିଲା । କାନୁନ ଗୋ ବଂଶ କନ୍ଦଳପୁରରେ ବସତି ସ୍ଥାପନ କରିବା ବେଳେ କନ୍ଦଳପୁର

ମାହାଲ "ନବାବ ଖାଁ" ନାମକ ଜନୈକ ମୁସଲମାନ ଜମିଦାରଙ୍କ ଅଧୀନରେ ଥିଲା । କାଳକ୍ରମେ କନ୍ଦଳପୁର ଜମିଦାରୀ କାନୁନ ଗୋ ବଂଶର ହସ୍ତଗତ ହେଲା । ବର୍ତ୍ତମାନ ଜମିଦାରୀ ଲୋପ ପାଇଲେ ମଧ୍ୟ ଏହି ବଂଶର ଆଭିଜାତ୍ୟ ପୂର୍ବ ପରି ବଜାୟ ରହିଛି । କାନୁନ ଗୋ ବଂଶର ଦାୟାଦମାନେ ପ୍ରଥମେ ଏହି ଗ୍ରାମରେ ସରକାରୀ ଚାକିରିଆ ରୂପେ ପରିଗଣିତ ହେଲେ । ତତ୍ପରେ ଗ୍ରାମର ଅନ୍ୟମାନେ ଶିକ୍ଷା ଦିଗରେ ଅଗ୍ରସର ହେଲେ । ଏବେ ଏହି ଗ୍ରାମର ପ୍ରତ୍ୟେକ ପରିବାର ଶିକ୍ଷାଲୋକରେ ଉଦ୍ଭାସିତ । କନ୍ଦଳପୁର ଗ୍ରାମର ଲକ୍ଷ୍ମୀଧର କାନୁନଗୋ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ! ଆଜୀବନ ପୁରୀ ଧାମରେ କାଳାତିପାତ କରୁଥିଲେ । ତାଙ୍କ ସାନ ଭାଇ ଶଶିଧର କାନୁନ ଗୋ ତାଙ୍କ ଚାକିରୀ ଜୀବନ ଭିତରେ ଏହି ଗ୍ରାମର କେତେକ ବ୍ୟକ୍ତିଙ୍କୁ ତାଙ୍କ ବିଭାଗରେ ଚାକିରୀ ଦେଇଥିଲେ । ସେ ଜଣେ ମିଷ୍ଟଭାଷୀ ପରୋପକାରୀ ବ୍ୟକ୍ତି ଥିଲେ । ଛ ପୁଅର ଜନକ ପାଟ ସାଇର ଶ୍ରୀ କୁଳମଣି ମହାନ୍ତି କୌଣସି କାର୍ଯ୍ୟ ନକରି କେବଳ ତାଙ୍କ ପିଣ୍ଡାରେ ବସି ବସି ଦୀର୍ଘ ଜୀବୀ ହୋଇ ପାରିଥିଲେ । ତାଙ୍କର ଯଥେଷ୍ଟ ଜମି ଥିବାରୁ ସେ ଏପରି ସୁଯୋଗ ଲାଭକରିଥିଲେ । ମଝି ସାଇର ଭଗବାନ ମହାନ୍ତି ଓ ମାଳଙ୍କ ସାଇର ଅମରେଶ୍ୱର ମହାନ୍ତି ଅତ୍ୟନ୍ତ କଷ୍ଟ ସହିଷ୍ଣୁ ଥିଲେ । ଟାଟା କମ୍ପାନୀର ଇସ୍ପାତ ସଙ୍ଗେ ସେମାନେ ଲଢ଼େଇ କରି ନିଜ ନିଜର ଯେଉଁ କର୍ତ୍ତବ୍ୟ ନିଷ୍ଠା ପ୍ରଦର୍ଶନ କରିଥିଲେ ତାହା ବାସ୍ତବିକ ଅତ୍ୟନ୍ତ ପ୍ରଶଂସନୀୟ । କାନୁନ ଗୋ ସାଇର ଇନ୍ଦ୍ରମଣି କାନୁନ ଗୋ କରଣ ମର୍ଯ୍ୟାଦା ରକ୍ଷା କରିବା ପାଇଁ ସତତ ଚେଷ୍ଟିତ ଥିଲେ । ସେ ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ ରହୁଥିଲେ । ଜମିଦାରୀ ଢଙ୍ଗର ଅନେକ ଗୁଣ ତାଙ୍କ ଠାରେ ପରିପୂର୍ଣ୍ଣ ଥିଲା । ତାଙ୍କ ପାଟିକୁ ଶ୍ରେଷ୍ଠ ଶ୍ରେଷ୍ଠ ପିଲା ଡରୁଥିଲେ । ନିଜ ସ୍ତ୍ରୀର କାର୍ଯ୍ୟ କଳାପକୁ ପ୍ରଶଂସା କରିବାରେ ସେ ଜଣେ ଧୁରନ୍ଧର ବ୍ୟକ୍ତି ରୂପେ ପରିଚିତ ଥିଲେ । କନ୍ଦଳପୁର ଗ୍ରାମରେ ମାଳଙ୍କ ସାଇର ଶ୍ରୀ ଲକ୍ଷ୍ମୀଧର ମହାନ୍ତି ପୁରୀର କେତେକ ମଠର ଗୁମାସ୍ତା ଥିଲେ ଏବଂ କେତେ ଜମିଦାରୀରେ ତହସିଲ କାର୍ଯ୍ୟ କରିଛନ୍ତି । ତାଙ୍କର ଯଥେଷ୍ଟ ପୁରାଣ ଜ୍ଞାନ ରହିଛି । ଈଶ୍ୱରଙ୍କ ପ୍ରତି

ପ୍ରଗାଢ଼ ଭକ୍ତି ଥିବାରୁ ବୃଦ୍ଧ ବୟସରେ ମଧ୍ୟ ସେ ସୁସ୍ଥ ସବଳ । ସେହି ସାହିର ଆଦର୍ଶ ଶିକ୍ଷକ ବାଉରୀ ବନ୍ଧୁ ମହାନ୍ତି ଦୁଃଖରେ ଜୀବନ କାଳାତିପାତ କରିଥିଲେ ସୁଦ୍ଧା ଗୋଟିଏ ମୁହୂର୍ତ୍ତ ମଧ୍ୟ ଈଶ୍ୱରଙ୍କ ନାମ ନେବାରୁ ବିରତ ନଥିଲେ । ସେ ଜଗନ୍ନାଥ ଓ ମଙ୍ଗଳାଙ୍କର ପରମ ଭକ୍ତ ଥିଲେ । ମାଳଙ୍କ ସାହିର ବାଳକୃଷ୍ଣ ମହାନ୍ତି ଏକ ଚମତ୍କାର ଚରିତ୍ର । ତାଙ୍କୁ ତହସିଲଦାର ଓ ଗୁମାସ୍ତା କାର୍ଯ୍ୟ ଭଲ ରକମ ଜଣାଥିଲା । ସେ ଜଣେ କର୍ମଦକ୍ଷ ନିଷ୍ଠାପର ଯୁବକ ଥିଲେ । ସଂଗୀତ ଓ କଳାପ୍ରେମୀ ବ୍ୟକ୍ତି ହିସାବରେ ସେ ଖଣ୍ଡ ମଣ୍ଡଳରେ ଜଣା । କଣ୍ଟା-ପାଟଣା ଗ୍ରାମର ସଂକୀର୍ତ୍ତନ ମଣ୍ଡଳକୁ ସେ ଜୀବନ୍ୟାସ ଦେଇଥିଲେ । ବିଭୂତି ପୁର ଯାତ୍ରା:ଦଳ ତାଙ୍କର ପୂର୍ଣ୍ଣ ସହଯୋଗରେ ଆତ୍ମ ପ୍ରକାଶ କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କ୍ରମେ କ୍ରମେ ବିଭୂତି ପୁର ଯାତ୍ରା ପାର୍ଟି ଓଡ଼ିଶାର ବିଭିନ୍ନ ସ୍ଥାନରେ ସୁନାମ ଅର୍ଜନ କରିଥିଲା । ଗ୍ରାମର ଜମିଦାର କୁଳମଣି କାନୁନଗୋଙ୍କ ଆର୍ଥିକ ଶ୍ରୀ ବାଳକୃଷ୍ଣ ମହାନ୍ତିଙ୍କ ମାନସିକ ସାହାଯ୍ୟରେ ଉକ୍ତ ଯାତ୍ରା ଦଳ କାକଟପୁର ଅଞ୍ଚଳର ସାଂସ୍କୃତିକ ଅନୁଷ୍ଠାନ ରୂପେ ସୁଖ୍ୟାତି ଅର୍ଜନ କରିଥିଲା । ବାଳକୃଷ୍ଣ ମହାନ୍ତି ବୟସ୍କଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ କନିଷ୍ଠଙ୍କ ପ୍ରତି ଯଥେଷ୍ଟ ସ୍ନେହ ପ୍ରଦର୍ଶନ କରୁଥିଲେ । ଭୁବନେଶ୍ୱର ରାଜଧାନୀ ନୂଆ ହୋଇ ଗଢ଼ା ହେବା ସମୟରେ ସେ ନିଜକୁ ସେଠାରେ ଜଣେ କଣ୍ଟ୍ରାକ୍ଟର ରୂପେ ପରିଚୟ ପ୍ରଦାନ କରିଥିଲେ । ବୈବାହିକ ଜୀବନରେ ସେ ମାତ୍ର ବତିଶ ବର୍ଷ ବୟସରେ ଇହଧାମ ପରିତ୍ୟାଗ କରିଥିଲେ ଜଣେ ସମାଜ ସେବୀ ଦୁଃସାହାସୀ ବ୍ୟକ୍ତି ଭାବେ ସେ କନକପୁର ଯୁବସମାଜର ଥିଲେ ଏକ ମାତ୍ର ଆଲୋକ ସ୍ତମ୍ଭ ।

ଏତ ଗଲା ଗ୍ରାମର ବିଶିଷ୍ଟ ବ୍ୟକ୍ତି ମାନଙ୍କ ପରିଚୟ । କନକ ନଗରକୁ ସାଧବ ମାନେ କପରି ମାଳଦରିଆର ଛୁଟି ତରି ଜାଭା, ସୁମାତ୍ରା ବୋର୍ଣ୍ଣିଓ ଓ ବାଲି ଦ୍ୱୀପରୁ ଅକଳନ୍ତି ଧନ ରତ୍ନ ବୋହି ଆଣୁଥିଲେ ତାହା ଅବଶ୍ୟ

ଜାଣିବା ଉଚିତ୍ । କନ୍ଦଳପୁର ଓ ନୀଳକଣ୍ଠ ପୁର ମଧ୍ୟରେ କନ୍ଦଳ ନଦୀର ଏକ ଅଂଶକୁ ସୁନାମୁହାଁ କୁହାଯାଏ । ସୁନାମୁହାଁ ବାଟେ ସାଧବ ମାନେ ବୋଇତରେ ଆଣିଥିବା ଅକଳନ୍ତ ଧନ ରତ୍ନ କନ୍ଦଳ ନଗରରେ ଅନାୟାସରେ ପହଞ୍ଚାଇ ଦେଇ ପାରୁଥିଲେ । କନ୍ଦଳନଦୀର ବଡ଼ଗଣ୍ଡ ଅତ୍ୟନ୍ତ ଗଭୀର । ତାହା ନୀଳଙ୍କ ପାହାଚର ଠିକ୍ ଉତ୍ତରରେ । ସମସ୍ତ ସମୟରେ ବଡ଼ ଗଣ୍ଡରେ ନୌକା ବୁଡ଼ ହୁଏ । ପୂର୍ବେ ବଡ଼ ଗଣ୍ଡ ଗୋମୁହାଁ, ଶଂଖିଆ, ବଉଳା, ସିନ୍ଦୁରା ଓ ଢେଡ଼ଆଳ କୁମ୍ଭୀର ମାନଙ୍କର ଆଡ୍ଡାସ୍ଥଳ ଥିଲା । ଅଧିକାଂଶ ସମୟରେ ନଦୀ ଅତଡ଼ାକୁ ଲଗି ଚରୁଥିବା ଗାଈ, ଗୋରୁ ଛେଳି, ମେଣ୍ଢା ମାନଙ୍କୁ କୁମ୍ଭୀର ଗ୍ରାସରେ ପଡ଼ିବାକୁ ହୁଏ । କୌଣସି ପୁରୁଷ ସ୍ତ୍ରୀ, ବାଳକ ବାଳିକା ବଡ଼ ଗଣ୍ଡକୁ ସ୍ନାନ କରିବାକୁ ଯାଇ ଫେରିବା ବିଳମ୍ବ ହେଲେ ସେ କୁମ୍ଭୀର ଗ୍ରାସରେ ପଡ଼ିଛି ବୋଲି ଲୋକେ ସନ୍ଦେହ କରନ୍ତି ଓ ସଙ୍ଗେ ସଙ୍ଗେ ତାହାଁର ଅନୁସନ୍ଧାନ ପାଇଁ ପ୍ରସ୍ତୁତ ହୋଇ ବଡ଼ଗଣ୍ଡ ଅଭିମୁଖେ ପ୍ରଧାବିତ ହୁଅନ୍ତି ।

କନ୍ଦଳପୁର ଗ୍ରାମର ପଶ୍ଚିମ ଦିଗରେ ବଲିଗ ମୌଜା । ବଲିଗ ଗ୍ରାମର ଉତ୍ତର ପୂର୍ବ କୋଣରେ ପ୍ରାଚୀ କୂଳରେ ପ୍ରାଚୀ ମାଧବ ମନ୍ଦିର । ଏହି ମାଧବ ମୂର୍ତ୍ତି ଅତ୍ୟନ୍ତ କମନୀୟ ଓ ଗୋଟିଏ ଜେଗା ମନୁଷ୍ୟ ପରି ପ୍ରତୀୟମାନ ହୁଏ ଏତେ ବଡ଼ ମାଧବ ମୂର୍ତ୍ତି କୁତ୍ରାପି ଦୃଷ୍ଟି ଗୋଚର ହୁଏ ନାହିଁ । ସେହି ମାଧବ ମୂର୍ତ୍ତି ସମ୍ମୁଖରେ ମନ୍ଦିର ବାହାରେ ଗୋଟିଏ ବ୍ରାହ୍ମଣ ମୂର୍ତ୍ତି ହସ୍ତଯୋଡ଼ି ମାଧବଙ୍କୁ ପ୍ରାର୍ଥନା କରୁଥିବାର ଦେଖାଯାଏ । ପ୍ରଫେସର ଡକ୍ଟର ଘନଶ୍ୟାମ ଦାସ ଓ ଡକ୍ଟର ନବୀନ କୁମାର ସାହୁ ସେହି ମୂର୍ତ୍ତିଟି ବିଦ୍ୟାପତି ମୂର୍ତ୍ତି ବୋଲି ଲେଖକଙ୍କୁ କହିଥିଲେ । କାରଣ କଣ୍ଟିଲୋ ନୀଳମାଧବଙ୍କ ମନ୍ଦିରରେ ସେହିପରି ମୂର୍ତ୍ତି ଦେଖାଯାଏ ନାହିଁ । ଲେଖକ ପ୍ରାଚୀ ଉପତ୍ୟକା ଅନୁସନ୍ଧାନ କମିଟି କାର୍ଯ୍ୟରେ ସେମାନଙ୍କୁ ସାହାଯ୍ୟ କରୁଥିଲେ । କଣ୍ଟିଲୋ ନୀଳମାଧବ ଓ ପ୍ରାଚୀ ମାଧବ ମଧ୍ୟରେ କେଉଁ ମାଧବଙ୍କୁ ବିଦ୍ୟାପତି ପ୍ରାର୍ଥନା କରୁଥିଲେ ତାହା ବାସ୍ତବିକ ଆଲୋଚନା କରିବା ଉଚିତ । ଶବର ରାଜ ବିଶ୍ୱାବସୁ ବିଶ୍ୱାମିତ୍ର ଋଷିଙ୍କ

ବଂଶଧର । କନ୍ଦଳ ନଗର ମଧ୍ୟରେ କନ୍ଦଳ ନଦୀ ତୀରରେ ତ୍ରେତୟା ଯୁଗରୁ ବିଶ୍ୱାମିତ୍ର ଋଷିଙ୍କ ଆଶ୍ରମ ପ୍ରତିଷ୍ଠିତ । ବିଶ୍ୱାମିତ୍ରଙ୍କ ଯଜ୍ଞକୁଣ୍ଡ ଏବେ ମଧ୍ୟ ସେହିଠାରେ ରହିଅଛି । ଉକ୍ତ ଆଶ୍ରମଟି ହାତୀ ଆଖଡ଼ା ମଠର ମାର୍ଫତଦାର ମହନ୍ତ ଶ୍ରୀ ଜନାର୍ଦ୍ଦନ ଦାସଙ୍କ ଦ୍ୱାରା ପରିଚାଳିତ କାରଣ ବିଶ୍ୱାମିତ୍ର ଆଶ୍ରମ ହାତୀ ଆଖଡ଼ା ମଠ ଅଧୀନରେ ରହିଅଛି । ହାତୀଆଖଡ଼ା ମଠର ମୂଳଗାଦି ଅଯୋଧ୍ୟା । ଏସବୁ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ପ୍ରକୃତ ବିଶ୍ୱାମିତ୍ର ଆଶ୍ରମ ପ୍ରାଚୀ ବା ପ୍ରାଚୀନ କନ୍ଦଳ ନଦୀର କୂଳ ବ୍ୟତୀତ ଭାରତର ଅନ୍ୟ କୌଣସି ସ୍ଥାନରେ ନଥିଲା । କନ୍ଦଳ ନଗରର ଦକ୍ଷିଣାଂଶରେ ବର୍ତ୍ତମାନ ପ୍ରାଚୀ ନଦୀର ଅପର ପାର୍ଶ୍ୱରେ ଥିବା ପଡ଼ିଆର ନାମ ତାଡ଼କା ପଡ଼ିଆ ବା ଚଢ଼କ ପଡ଼ା । ସେହି ତାଡ଼କା ପଡ଼ିଆରେ ଅଧୁନା ମଙ୍ଗଳା ମହାବିଦ୍ୟାଳୟ, କାକଟପୁର ଅବସ୍ଥିତ । ତାଡ଼କା ପଡ଼ିଆ ବିଶ୍ୱାମିତ୍ର ଆଶ୍ରମର ଦକ୍ଷିଣରେ । ସେ ସ୍ଥାନ ପୂର୍ବେ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ସେହି ଜଙ୍ଗଲରେ ଅନେକ ଋଷି ଆଶ୍ରମ ଥିଲେ ସୁଦ୍ଧା ମାତ୍ର ହେଲେ ବିଶ୍ୱାମିତ୍ରଙ୍କ ଆଶ୍ରମ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା । ତ୍ରେତୟା ଯୁଗରେ ରାମ ଲକ୍ଷ୍ମଣ ତାଡ଼କା ଅସୁରୁଣୀକୁ ବିଶ୍ୱାମିତ୍ର ଆଶ୍ରମ ନିକଟରେ ବଧ କରିଥିଲେ । ଅସୁରୁଣୀର ନାମାନୁସାରେ ତାଡ଼କା-ପଡ଼ିଆର ସୃଷ୍ଟି । ପ୍ରାଚୀ କୂଳରେ ଦଧିଚି ମୁନିଙ୍କ ଆଶ୍ରମ ଥିଲା । ଇନ୍ଦ୍ରଙ୍କ ଦ୍ୱାରା ଦଧିଚି ମୁନିଙ୍କ ଅସ୍ଥିରେ ନିର୍ମିତ ପ୍ରଥମ ବଜ୍ର ଦ୍ୱାରା ସେହି ତାଡ଼କା ପଡ଼ିଆରେ ବୃତ୍ରାସୁର ନିହତ ହୋଇଥିବାରୁ ତାଡ଼କା ପଡ଼ିଆର ଅନ୍ୟନାମ ଚଢ଼କପଡ଼ା ବା ତାଡ଼କା ପଡ଼ିଆ ସତ୍ୟଯୁଗରୁ ଅସୁର ମାନଙ୍କ ବାସସ୍ଥାନ ରୂପେ ପରିଗଣିତ ହୋଇ ଆସୁଅଛି । କାକଟପୁର, କନ୍ଦଳପୁର ବା ତାଡ଼କା ପଡ଼ିଆ ଅଞ୍ଚଳରେ କଉଡ଼ି ପରିପୂର୍ଣ୍ଣ ନାନା ଚିତ୍ର ବିଚିତ୍ର ମାଟିଆ, ବଣା, ବଡ଼ ବଡ଼ ଦୂମ ବୌଦ୍ଧ ଜୈନ ମୂର୍ତ୍ତି ଇତ୍ୟାଦି ମାଟି ଖୋଳିବା ସମୟରେ ଭୂଗର୍ଭରୁ ବାହାରୁଅଛି ।

ବିଶ୍ୱାବସୁ ଶବର ବିଶ୍ୱାମିତ୍ର ଆଶ୍ରମର ଅନତି ଦୂରରେ ବେଦଣା କୁଣ୍ଡ

ନାମକ ସ୍ଥାନରେ ବସବାସ କରୁଥିଲେ । ରୋହଣାକୁଣ୍ଡ ଗୋଟିଏ କ୍ଷୁଦ୍ର ପୁଷ୍କରଣୀ । ତାହା ପାତାଳ ଫୁଟି ବୋଲି ଲୋକ ମୁଖରେ ଶୁଣାଯାଏ । କେହି କେହି ସନ୍ନ୍ୟାସୀ କହିବାର ଶୁଣାଯାଇଛି, ରାମଚନ୍ଦ୍ରଙ୍କ କଠଉ ଓ ଭରତଙ୍କ ବାଟୁଳି ରୋହଣାକୁଣ୍ଡରେ ଆତ୍ମ ଗୋପନ କରିଅଛି । କଳିଯୁଗ ଶେଷରେ ସେ ଗୁଡ଼ିକ ଆତ୍ମପ୍ରକାଶ କରିବେ । ରୋହଣାକୁଣ୍ଡ କଦଳିପୁରସ୍ଥ କାନୁନଗୋ ବଂଶ ଅଧିନରେ । ଜଣେ ସନ୍ନ୍ୟାସୀ ଆସି ରୋହଣାକୁଣ୍ଡ ପୁନରୁଦ୍ଧାର କାର୍ଯ୍ୟରେ ଲିପ୍ତ । ମହୋଦଧିର ଦକ୍ଷିଣ ତୀରରେ ବିଶ୍ୱାବସୁଙ୍କ ଅଶ୍ରମସ୍ଥଳ ଥିଲା । ଏଠାରେ ମହୋଦଧିର ଅର୍ଥ ସମୁଦ୍ର କହିଲେ ଭୁଲ ହେବ । ମହୋଦଧିର ଅର୍ଥ ପ୍ରାଚୀ ମହୋଦଧି ବା ପ୍ରାଚୀକୂଳରେ ଚଉରଶି ଗ୍ରାମ ନିକଟରେ ଲଳିତା ମୂର୍ତ୍ତି ଅଛନ୍ତି । ଲଳିତା ନାମରେ ପ୍ରାଚୀର ଗୋଟିଏ ଉପ ନଦୀ ସେହିସ୍ଥାନରେ ପ୍ରବାହିତ ହେଉଅଛି । ପୁନଶ୍ଚ ବିଶ୍ୱାବସୁ ଶବରର ଏକମାତ୍ର କନ୍ୟାର ନାମ ଲଳିତା । ଅନୁମାନ କରାଯାଉଛି ଜଗନ୍ନାଥଙ୍କ ମୂର୍ତ୍ତି ଯେଉଁ ଦାରୁରେ ନିର୍ମିତ ହୋଇଥିଲା ସେହି ପ୍ରଥମଦାରୁ ବିଶ୍ୱାବସୁ ଶବର ଦ୍ୱାରା ରୋହଣାକୁଣ୍ଡରେ କର୍ତ୍ତନ କରାଯାଇଥିଲା । ସେହି ଦାରୁକୁ ପ୍ରାଚୀନ ପ୍ରାଚୀ ଅର୍ଥାତ୍ କନ୍ଦଳ ନଦୀରେ ଭସାଇ ଦିଆଯାଇ ନଥିବ କାହିଁକି ? ସେହି ବ୍ରହ୍ମପୂର୍ଣ୍ଣ ଦାରୁ କନ୍ଦଳ ନଦୀରୁ କୁଶଭଦ୍ରା, ଭର୍ଗବୀ ମଧ ଦେଇ ପରିଶେଷରେ ସମୁଦ୍ର ପରିଭ୍ରମଣ କରି ଶରଧା ନଦୀର ବାଙ୍କି ମୁହାଣରେ ଲଗିଥିବା କଥାକୁ କିଏବା କାହିଁକି ଅସ୍ୱୀକାର କରିବ ? ସେହି ବ୍ରହ୍ମପୂର୍ଣ୍ଣ ଦାରୁକୁ ବିଶ୍ୱାବସୁ ନିଶ୍ଚିତ ଭାବେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ନିକଟରେ ପହଞ୍ଚାଇ ଦେଇଥିଲେ ବୋଲି ପୁରାଣ ସକଳ ବଜ୍ରନିର୍ଘୋଷରେ ପ୍ରଚ୍ଚାର କରେ । ପ୍ରଥମ ଦାରୁ ମଙ୍ଗଳା ଠାକୁରାଣୀଙ୍କ ନିକଟବର୍ତ୍ତୀ ସ୍ଥାନରେ କର୍ତ୍ତନ କରାଯାଇ ନଥିଲେ ମଙ୍ଗଳାମାଙ୍କ ନିର୍ଦ୍ଦେଶ ପାଇଁ ଦାରୁ ସଂଗ୍ରହ ଉଦ୍ଦେଶ୍ୟରେ ଦଇତାପତିମାନେ ସେଠାରେ ନବକଳେବର ପୂର୍ବରୁ ଗୁହାରିଆ ପଡ଼ନ୍ତେ ନାହିଁ । ସମସ୍ତ ବିଷୟ ଆଲୋଚନା କରିବା ସଙ୍ଗେ ସଙ୍ଗେ ଏଥିରେ ଗୋଟିଏ ନୂତନ ତଥ୍ୟ ପରିବେଷଣ କରିବାକୁ ମୁଁ ଚେଷ୍ଟା କରୁଛି । ସେଥିରେ କିଛି ପରିମାଣରେ ସତ୍ୟତା ଥିବାର ଅନୁମିତ ହୁଏ ।

କନ୍ଦଳପୁର ଗ୍ରାମରେ ଲୋକନାଥ ମହାନ୍ତ ଓରଫ ଲୋକନାଥ ବା' ବା ଅଦ୍ଭୁତ ଭାବରେ ରୋଗୀ ମାନଙ୍କୁ ଭଲ କରୁଥିଲେ, ତାହାର କାରଣ କିମ୍ବଦନ୍ତୀ ପରେ ଜଣାପଡ଼ୁଛି । ଲୋକନାଥ ବାବାଙ୍କର ପୁରୀ କଟକ ଜିଲ୍ଲାରେ ଅନେକ ଶିଷ୍ୟ ହେଲେ । ସେ ମହାଶୟ ରୋଗୀଙ୍କ ଦେହରେ ହସ୍ତରେ ଧରିଥିବା ଚମୁଟାଟି ଛୁଆଁଇ ଦିଅନ୍ତି । ସଙ୍ଗେ ସଙ୍ଗେ ରୋଗୀର ରୋଗ ଭଲହୋଇଯାଏ । ଲୋକନାଥ ବା ବା ବର୍ତ୍ତମାନ ପରପାରେରେ । ସେ ଇହ ଜଗତରେ ନାହାନ୍ତି । ତାଙ୍କ ଚମୁଟାଟି ତାଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ କୁଞ୍ଜ ବିହାରୀ ମହାନ୍ତଙ୍କ ଦ୍ୱାରା ପୂଜା ପାଇ ଆସୁଅଛି । ସେଥିରେ ଅଚ୍ୟୁତାନନ୍ଦ ଦାସଙ୍କ ନାମ ଲେଖା ଥିବା ଜଣାପଡ଼ୁଛି । ଉକ୍ତ ଚମୁଟାଟି ଲୋକନାଥ ବା ବା କେଉଁଠାରୁ କାହାଠାରୁ ପାଇଲେ ତାହା ଏପର୍ଯ୍ୟନ୍ତ ରହସ୍ୟ ବୃତ୍ତ ହୋଇ ରହିଅଛି ।

ପ୍ରାଚୀ ଅର୍ଥାତ୍ ପୂର୍ବ କନ୍ଦଳ ନଦୀ କୂଳରେ ବାରମଠ ଓ ବାରକୁଞ୍ଜ ଥିଲା । ବର୍ତ୍ତମାନ ଆଖିଆଗରେ ପଡ଼େ ଗୋପୀଦାସ ମଠ, ପ୍ରାଚୀ ଗୁରୁ ଧର୍ମ କ୍ଷେତ୍ର [ଯାହାକୁ ବା ବା ମଧୁସୂଦନ ଦାସ ପ୍ରତିଷ୍ଠା କରିଛନ୍ତି] କପାଣିଅର ଖାରଫିକ ଗଦୀ ଅଗିଖିଆମଠ ଇତ୍ୟାଦି । ପ୍ରାଚୀ କୂଳରେ ଗୋଟିଏ ପ୍ରବାଦ ଅଛି । ଗୋରେଖ ନାଥଙ୍କ ବିଦ୍ୟା, ଖାରଫିକଙ୍କ ଆଜ୍ଞା ମଲ୍ଲିକାନାଥଙ୍କ ଯୋଗ, ବାଉଳ ଦାସଙ୍କ ପ୍ରତିଜ୍ଞା, ଲୋହିଦାସ ଓ କପିଳଙ୍କର ସାଧିମନ୍ତ୍ର । ସିଦ୍ଧ ସାଧୁମାନଙ୍କ ମଠ କନ୍ଦଳ ତଟିନୀ କୂଳରେଥିଲା । ଗୋରକ୍ଷନାଥ, କାହ୍ନୁପା ହାଡ଼ପା ଓ ତମ୍ପା ପ୍ରଭୃତି ସିଦ୍ଧସାଧୁ ମାନଙ୍କର ଆଶ୍ରମ ପ୍ରାଚୀ ଅର୍ଥାତ୍ ପୂର୍ବ କନ୍ଦଳନଦୀ କୂଳରେ ଥିଲା । ଉକ୍ତ ସିଦ୍ଧ ସାଧକ ମାନଙ୍କ ସହିତ ରାଜା ଗୋବିନ୍ଦ ଚନ୍ଦ୍ର ଓ ତାଙ୍କ ମାତା ମୁକ୍ତା ଦେଇଙ୍କର ସମ୍ପର୍କ ଥିଲା । ଯଶୋବନ୍ତ ଦାସଙ୍କ ଗୋବିନ୍ଦଚନ୍ଦ୍ର ବା ଟୀକା ଗୋବିନ୍ଦଚନ୍ଦ୍ର ପାଠକଲେ ଜଣାପଡ଼େ ଦିମୁ ଚନ୍ଦ୍ର ରାଜାଙ୍କ ପୁତ୍ରର ନାମ ଗୋବିନ୍ଦ ଚନ୍ଦ୍ର ଓ ତାଙ୍କ ରାଣୀଙ୍କ ନାମ ମୁକ୍ତା-ଦେଈ ଗୋବିନ୍ଦ ଚନ୍ଦ୍ର ବଙ୍ଗଦେଶର ରାଜା ବୋଲି ଟୀକା ଗୋବିନ୍ଦଚନ୍ଦ୍ରରେ ଲେଖା ଅଛି । ସେ ବଙ୍ଗଦେଶ ପଶ୍ଚିମ ବଙ୍ଗ ବା ପୂର୍ବ ବଙ୍ଗ କେଉଁଠାରେ

ଜଣାପଡ଼ୁନାହିଁ । ଅନୁମାନ କରଯାଉଅଛି ଗୋବନ୍ଦଚନ୍ଦ୍ରଙ୍କ ରାଜ୍ୟ ଏର ବଙ୍ଗ (ଐର ବଙ୍ଗରୁ ଅପଭ୍ରଂଶ ହୋଇଛି) । ସେ ସମୟରେ ଏର ବଙ୍ଗ, ବାରଭୁଙ୍ଗ ରଢ଼ ମିଶି ଗୋଟିଏ ଶ୍ରେଷ୍ଠ ରାଜ୍ୟ ସୃଷ୍ଟି ହୋଇଥିଲା । ଗୋବନ୍ଦଚନ୍ଦ୍ର ଜଣେ ବଡ଼ବୀର ଥିଲେ । ତାଙ୍କର ଅନେକଶତ ରାଣୀ ଥିଲେ । ଗୋବନ୍ଦଚନ୍ଦ୍ର ଙ୍କ ମାତା ମୁକ୍ତାଦେଈ ଗୋରଖନାଥଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ହାଡ଼ିପା ଗୋବନ୍ଦଚନ୍ଦ୍ରଙ୍କ କୃପାରେ ସିଦ୍ଧ ହୋଇ ପାରିଥିଲେ , ଜନଶ୍ରୁତି ଅଛି ହାଡ଼ିପାଙ୍କ ଆଶ୍ରମ ବାରସିଂହ ଗାଦ୍ଧ ନପାଣିଆ ଦେଉଠାରେ ଓ କାହ୍ନୁ ପାଙ୍କ ଆଶ୍ରମ ପୁରର ବା ଙ୍ଗାର୍ଥ ନିକଟସ୍ଥ ଅଗିଖିଆ ମଠରେ ଥିଲା । ବର୍ତ୍ତମାନ ତନ୍ତୀପା ଓ ଗୋରଖ ନାଥଙ୍କ ଆଶ୍ରମ କେଉଁଠାରେ ଥିଲା ତାହା ବିସ୍ତର କରାଯାଉ । ଥରେ ତନ୍ତୀପା ଶୂନ୍ୟରେ ଲୁଗା ବୁଣୁଥିଲେ । ସେହି ମାର୍ଗରେ ଶୂନ୍ୟରେ ଗୋରଖନାଥ .ଗମନ କରୁଥିଲେ । ତାଙ୍କ ସହିତ ମଧ୍ୟ କାହ୍ନୁପା ଥିଲେ । ତନ୍ତୀପାଙ୍କର ତନ୍ତକୁ ଗୋରଖ ନାଥ କାଟି ପକାଇଲେ । ସିଦ୍ଧ ସାଧୁ ଗୋବନ୍ଦଚନ୍ଦ୍ର ଏହା ମଧ୍ୟ ଦେଖି ପାରିଲେ । ଗୋରଖ ନାଥଙ୍କ ପ୍ରଭୁତ୍ୱ ତନ୍ତୀପା ସ୍ୱୀକାର ନକରି ତାଙ୍କ ସହିତ ବିଭିନ୍ନ ପରୀକ୍ଷାରେ ଅବତୀର୍ଣ୍ଣ ହେଲେ । ତନ୍ତୀପା ଯେତେ ରୂପ ଧାରଣ କରନ୍ତି ଗୋରଖ ନାଥ ସେ ସବୁ ଧରି ପାରନ୍ତି । ଗୋରଖ ନାଥ ଯେତେବେଳେ ଜଳରେ ଜଳ ହୋଇ ମିଶିଗଲେ ସେତେବେଳେ ତନ୍ତୀପା ତାଙ୍କୁ ଖୋଜି ନପାଇ ନିରାଶ ହେଲେ ଓ ପ୍ରଭୁଙ୍କୁ ବାହାରି ଆସିବାକୁ ପ୍ରାର୍ଥନା କଲେ ।

ଗୋରଖନାଥ ସ୍ୱଦେହରେ ଅବତୀର୍ଣ୍ଣ ହୋଇଥିଲେ । ତନ୍ତୀପା ଗୋରଖ ନାଥଙ୍କ ଠାରେ କ୍ଷମା ମାଗି ପୂର୍ବପରି ଲୁଗା ବୁଣିଲେ ଶୂନ୍ୟରେ । ଉକ୍ତ ସ୍ଥାନରେ ଗୋବନ୍ଦଚନ୍ଦ୍ର ଗୋରଖନାଥଙ୍କ ପରିଚୟ ପାଇ ତାଙ୍କୁ ପ୍ରଣିପାତ ହେଲେ ଓ ତାଙ୍କ ନିର୍ଦ୍ଦେଶ ପାଇ ଶୂନ୍ୟରେ ସ୍ୱର୍ଗପୁରକୁ ଗମନ କଲେ । ଏହା ପୂର୍ବରୁ ଗୋବନ୍ଦ ଚନ୍ଦ୍ରଙ୍କର ମର୍ତ୍ତ୍ୟ ଓ ପାତାଳ ପୁର ଭ୍ରମଣ ଶେଷ ହୋଇଥିଲା । ଯେଉଁ ସ୍ଥାନରେ ତନ୍ତୀପା ଲୁଗା ବୁଣୁଥିଲେ ଏବଂ ଲୁଗା ବୁଣା ତନ୍ତ ଯେଉଁଠି

ଛିଣ୍ଡି ପଡ଼ିଥିଲା ତାହାର ନାମ ଏବେ କୁହାଯାଉଛି ତଣ୍ଟି କାଟି ତାହାର ପ୍ରକୃତ ନାମ ହେଉଛି ନେକାଟି ମାତ୍ର ଅପଭ୍ରଂଶ ରୂପେ ତଣ୍ଟି କାଟି ହେଲା ଦର ଅନୁମାନ କରାଯାଏ । ତଣ୍ଟିକାଟି ବର୍ତ୍ତମାନ ଧାନ ଜମିର ଏକ ବିରାଟ ଚହର । ଏହା ବଭୂତପୁର ଓ କନ୍ଦଳପୁର ମଧ୍ୟରେ ଅବସ୍ଥିତ । ବଭୂତିପୁର ତନ୍ତ୍ରୀ ଅଧ୍ୟୁଷିତ ଅଞ୍ଚଳ । ତଣ୍ଟି କାଟି ଅର୍ଥାତ୍ ନେକାଟି ଠାରେ ଗୋରଖନାଥଙ୍କ ଠାରୁ ତନ୍ତ୍ରୀପା କାହ୍ନୁପା ଓ ଗୋବିନ୍ଦଚନ୍ଦ୍ର ବିଭୂତି ନେଇଥିବାରୁ ନେକାଟି ନିକଟସ୍ଥ ଗ୍ରାମର ନାମ ବିଭୂତି ପୁର । ଏଥିରୁ ସ୍ପଷ୍ଟ ଅନୁମେୟ ତନ୍ତ୍ରୀପାଙ୍କ ଆଶ୍ରମ ବଭୂତିପୁରରେ ଥିଲା । କନ୍ଦଳ ପୁରରେ ନାରଦୁର୍ଣୀ ଠାକୁରାଣୀ ଯେଉଁ ପୁଂଲିଙ୍ଗ ମୂ ରୂପେ ଦେଖା ଦେଇଛନ୍ତି ସେ କାହ୍ନୁଁକସିଦ୍ଧ ସାଧୁ ଗୋରଖନାଥ ହୋଇ ନଥିବେ ? ଏଥିରୁ ସ୍ପଷ୍ଟ ଅନୁମେୟ ଗୋରଖନାଥଙ୍କ ଆଶ୍ରମ କନ୍ଦଳ ପୁରରେ ଥିଲା । ତେବେ ପ୍ରାଚୀନ କନ୍ଦଳ ନଗରର ସୀମା ନିର୍ଦ୍ଧାରଣ କଲେ ଜଣାଯାଏ ଏହି ନଗର ବଲଗ କନ୍ଦଳପୁର ଛଡ଼ାଂଶ, ଓଡ଼ଙ୍ଗ, କୁଅଦୋ ମଳକଣ୍ଠ ପୁର, ଗୋକୁଳପୁର, ଶୁଆଖିଆ, ଭୁଜାମାଳ, ଗମ୍ଭାରିପଦା, ବଭୂତିପୁର କଣ୍ଟକଣା ଠାରୁ ଅସ୍ତରଙ୍ଗ ପର୍ଯ୍ୟନ୍ତ ବିଶ୍ୱାମିତ୍ରାଶ୍ରମ ଠାରୁ ତାଡ଼କା ପଡ଼ିଆ ସମେତ ଚଉରାଶି ପର୍ଯ୍ୟନ୍ତ ତାହାର କଳେବର ବିସ୍ତାର କରିଥିଲା । କନ୍ଦଳ ନଗରକୁ ଲାଗି କଣ୍ଟକନଗର କାକଟପୁର ଠାରୁ କୋଣାର୍କ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । କନ୍ଦଳ ନଗରର ଲୋକ ମାନେ ଅତି ସୁଖରେ କାଳାତିପାତ କରୁଥିଲେ । ପ୍ରାୟ ସବୁ ଜାତିର ଲୋକ ଏଠାରେ ବାସ କରୁଥିବାର ଜଣାପଡ଼େ । କନ୍ଦଳ ନଗରରେ ଯେଉଁ ଶାଅର ବା ଶବର ମାନେ ବାସ କରୁଥିଲେ ସେମାନେ ବାଉରି ( ହରିଜନ ) ନାମରେ ଏବେ ପରିଚିତ । କନ୍ଦଳପୁରରେ ଦୁଇଟି ବାଉରି ସାହି ଏବେ ମଧ୍ୟ ରହିଅଛି, ତନ୍ମଧ୍ୟର ଗୋଟିକର ନାମ କଣ୍ଟା ସାହି ଓ ଅନ୍ୟଟି କନ୍ଦଳପୁର ବାଉରିସାହି । କନ୍ଦଳ ପୁରକୁ ଲାଗି ଯେଉଁ ଟେଲିସାହି [ ଅନ୍ୟ ନାମ କଣ୍ଟା-ପାଟଣା ] ରହିଛି ସେମାନେ ପୂର୍ବ ସାଧବ ମାନଙ୍କ ବଂଶଧର । ତେଣୁ ଐତିହାସିକ ମାନେ କଣ୍ଟକ ନଗର ଓ କନ୍ଦଳ ନଗର ସମ୍ପର୍କରେ ଗବେଷଣା କଲେ ପ୍ରକୃତ ଐତିହାସିକ ତଥ୍ୟରେ ଉପନୀତ ହୋଇ ପାରିବେ । ତେଣୁ

ପ୍ରାଚୀ ସଭ୍ୟତାର ପାଠକ ଉନ୍ମୋଚିତ ହେବାରେ ସନ୍ଦେହର ଅବକାଶ ରହିବନାହିଁ । କନ୍ଦଳ ନଦୀ ବନ୍ଦରରେ ବୋଇତ ବନ୍ଦାଣ ଉତ୍ସବ ଅତି ଚମତ୍କାର ଭାବରେ ପାଳନ କରାଯାଏ । ବୋଇତ ଗୁଡ଼ିକ ନାନା ପୁଷ୍ପ ବିଭୂଷିତ ହୋଇ ବନ୍ଦରଗଣ୍ଡ ନିକଟରେ ଏକତ୍ରିତ ହୁଅନ୍ତି । ସାଧବ ଲଳନା ମାନଙ୍କ ହୁଳ ହୁଳ ଶଙ୍ଖ ଧ୍ୱନିରେ ଗଗନ ପବନ ମୁଖରିତ ହୁଏ । ହଜାର ହଜାର ଦର୍ଶକ ଉକ୍ତ ସ୍ଥାନରେ ଉପସ୍ଥିତ ହୋଇ ସେ ଦୃଶ୍ୟ ଅନୁଭବ କରନ୍ତି । ଏ ସବୁ ଚିନ୍ତା କଲେ ଆମର ମନେହୁଏ କନ୍ଦଳ ବନ୍ଦର ଓ କନ୍ଦଳ ନଗର ସମୃଦ୍ଧିର ଶୀର୍ଷ ସ୍ଥାନରେ ଆରୋହଣ କରିଥିଲା । ଚଷୂପୋଡ଼ା ଇଟାର ବାର୍ମିଂ ଗୁଡ଼ିକ ମଧ୍ୟ ଐତିହାସିକ ମାନଙ୍କୁ ବହୁ ଉପାଦାନ ଯୋଗାଇ ପାରେ । ପ୍ରାଚୀ ଅଥବା କନ୍ଦଳ ସଭ୍ୟତା ଅତି ପ୍ରାଚୀନ ସଭ୍ୟତା କହିଲେ ଅତ୍ୟୁକ୍ତି ହେବନାହିଁ । ସମୃଦ୍ଧିମନ୍ତ କନ୍ଦଳ-ନଗରରେ ଯେଉଁ ବୋଲଗ ମାଧବ ବା ମାଧବାନନ୍ଦ ଅଛନ୍ତି ସେ ଯେ ପ୍ରକୃତ ନୀଳମାଧବ ଏବଂ ତାଙ୍କୁ ହିଁ ବିଶ୍ୱାବସୁ ଶବର ପୂଜା କରୁଥିଲା ଏହା କେତେ ଦୂର ବିଶ୍ୱାସ ଯୋଗ୍ୟ ତାହା ଆଲୋଚନା କରିବା ଉଚିତ । କନ୍ଦଳ ନଦୀ ତଟ ପ୍ରଦେଶରେ ମାଧବାନନ୍ଦଙ୍କ ମନ୍ଦିର ଭାଙ୍ଗିଯିବାରୁ ଦେବତା ଆଧୁନିକ ମନ୍ଦିରରେ ପୂଜା ପାଉଛନ୍ତି । ବିଶ୍ୱାବସୁ ଶବର ଜାରା ଶବରର ବଂଶଧର । ତେଣୁ ଜାରାଶବର ପୂର୍ବ ବର୍ଣ୍ଣିତ ରୋହଣୀକୁଣ୍ଡ ନିକଟରେ ସେ ବାସ କରୁଥିବ ସେଥିରେ ସନ୍ଦେହର ଅବକାଶ ନାହିଁ । ରୋହଣୀକୁଣ୍ଡ ଅଞ୍ଚଳ ଏବେ ମଧ୍ୟ ପ୍ରାଚୀର କୋଟିଏ ଦ୍ୱୀପ ପରି ଦେଖାଯାଏ । ଅନିରୁଦ୍ଧ ଦାଶ ଆଇ.ଏ ଏସଙ୍କ ନବକଳେବର ପୁସ୍ତକରେ ଲେଖାଯାଇଛି ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରେରିତ ବିଦ୍ୟାପତି ବ୍ରାହ୍ମଣ ଅରଣ୍ୟ ପଥରେ ବୁଲୁ ବୁଲୁ ଶେଷରେ ଶବର ଅଧ୍ୟୁଷିତ ଏକ ଦ୍ୱୀପରେ ପହଞ୍ଚିଲେ ।

‘‘ଦଦର୍ଶ ଶବର ଗାରେ ବେଷ୍ଟିତଂ ପରିତୋ ଦ୍ୱିଜଃ
କ୍ଷେତ୍ରସ୍ୟ ଦ୍ୱୀପ ସଂସ୍ଥାନଂ ଖ୍ୟାତଂ ଶବର ଦୀପକମ୍

କନ୍ଦଳ ନଦୀ କୂଳରେ ଯେଉଁ ତାଡକା ବନ ଥିଲା ସେଠାରେ ଅନେକ ଯୋଗୀ ଋଷି ରହୁଥିଲେ ଏବଂ ତାହାକୁ ପ୍ରକୃତ ଦଣ୍ଡକାରଣ୍ୟ କୁହା ଯାଉଥିଲା । ତେଣୁ ଶୂନ୍ୟସଂହିତା (ଅଚ୍ୟୁତାନନ୍ଦ ଦାସଙ୍କ ଲିଖିତ) ଦଶମ ଅଧ୍ୟାୟରେ ଅଛି-

ଦଣ୍ଡକା ଅରଣ୍ୟ ପୂର୍ବ ପ୍ରାଚୀ ନଦୀ କୂଳ
ସବୁ ଋଷିମାନେ ତହିଁ ହୋଇଛନ୍ତି ଠୁଳ
ସେଠାରେ ପ୍ରବେଶ ଯାଇ ମାଧୁସ୍ୱୀ ଗୋସାଇଁ
ସବୁ ଋଷି ମାନଙ୍କୁ ପ୍ରଣାମ କଲେ ଯାଇ

ଅଚ୍ୟୁତାନନ୍ଦଙ୍କ ମାଳିକା ଅନୁସାରେ କନ୍ଦଳ ଅର୍ଥାତ୍ ପୂର୍ବ ପ୍ରାଚୀ ତଟସ୍ଥ ଦଣ୍ଡ ଅରଣ୍ୟ ମଧ୍ୟରେ ଗୋଲକ, ମଲ୍ଲିକାନାଥ, ସାରସିଂହ, ଲୋହଦାସ ଓ ବାଳକ ଦାସ ଇତ୍ୟାଦି ଆଶ୍ରମ ବା ମଠ ସ୍ଥାପନ କରିଥିଲେ । କନ୍ଦଳ ନଦୀ କୂଳରେ ନିମ୍ନଲିଖିତ ଗ୍ରାମ ମାନଙ୍କରେ ଧାଡ଼ି ଧାଡ଼ି ବାର୍ମି ଦେଖାଯାଏ ।

କନ୍ଦଳପୁର, ଲତାହରଣ, ଓଳଗାଁର ନଈ ଶୁଆଁ ପ୍ରଭୃତି ଅନେକ ଗ୍ରାମ । କନ୍ଦଳ ନଦୀ କୂଳରେ ଥିବା ମୂଳୀଗଡ଼ ନଳ ରଜାଙ୍କ ରାଜଧାନୀ ଥିଲା । ସେ ନଳ କିଏ ତାହା ଜାଣିବା ପାଇଁ କୌଣସି ପ୍ରମାଣ ନାହିଁ । ତଥାପି ନିମ୍ନଲିଖିତ କିମ୍ବଦନ୍ତୀରୁ କିଛି ଐତିହାସିକ ବା ପୌରାଣିକ ତଥ୍ୟ ସଂଗ୍ରହ କରାଯାଇ ପାରେ—

ଅଦ୍ୟାପି ଅଛି ନାମ ଯେ ମୂଳାଗଡ଼
ନଳ ରଜାଙ୍କର ଥିଲା ଦୃଢ଼ ଗଡ
ପ୍ରାଚୀର ଥିଲା ତାର ଚଉପାଶର
ବଡ଼ ଧାର୍ମିକ ଥିଲେ ସେ ନରବର
କରିଅଛନ୍ତି କୀର୍ତ୍ତି ନାନା ସ୍ଥାନରେ
ସୋମନାଥ ମନ୍ଦିର ମୂଳାଗଡରେ
ଗଣେଶଙ୍କ ମନ୍ଦିର ନଦୀ ଗ୍ରାମରେ
ନଈ ଶୁଆଁ ବିଖ୍ୟାତ ଲୋକ ମୁଖରେ

ଅନେକ କୀର୍ତ୍ତି ଅଛୁ ଆଉ ଏପରି
କୂପ ସଡ଼କ ବଡ଼ ବଡ଼ ପୋଖରୀ
ଭଟ୍ଟାବ ଶେଷ ଅଛୁ ଆଜ ପର୍ଯ୍ୟନ୍ତ
ଦେଉଛନ୍ତି ପରିଚୟ ଜନେ ସତତ

ମୂଳ ଟଉନର ଦକ୍ଷିଣରେ ଏବେ ମଧ୍ୟ ଦୁଇଟି ପୁଷ୍କରିଣୀ ରହିଛି । ଲୋକମାନେ ସେଗୁଡ଼ିକୁ ରାଜା ରାଣୀ ପୋଖରୀ କହୁଛନ୍ତି କିଏ ନକହିବ ଯେ ଏହି ପୁଷ୍କରିଣୀରେ ଧାର୍ମିକ ରାଜା ନଳ ଓ ପତି ପରାୟଣା ଦମୟନ୍ତୀ ଅଲଗା ଅଲଗା ସ୍ନାନ କରୁ ନଥିବେ । କନ୍ଦଳ ନଗରରେ ବୌଦ୍ଧ, ଜୈନ ହିନ୍ଦୁ ମୁସଲମାନ ନିରାକାର ଧର୍ମର ଲୋକମାନେ ବାସକରୁଥିଲେ । କନ୍ଦଳ ନଦୀ କୂଳରେ ବୁଦ୍ଧଙ୍କ ଶିଷ୍ୟ ପିଙ୍ଗଳଙ୍କ ନାମାନୁସାରେ ପିଙ୍ଗଳେଶ୍ୱର ମହାଦେବ ମନ୍ଦିର ରହିଅଛି । କନ୍ଦଳ ଡିଟିମା ଓଡ଼ଦେଶ ପ୍ରାଚୀନ ଉତ୍କଳରାଷ୍ଟ୍ରର ସୂଚନା ଦିଏ । ପରେ ଉତ୍କଳରାଷ୍ଟ୍ର ଓଡ଼ିଶା ନାମ ଗ୍ରହଣ କରିଛି । ପୂର୍ବେ ଗୋଲଗ୍ରା ମରିଚ ପୁର, ହରିଶ ପୁର, ବାଷୁନ ପୁର, କୁଜଙ୍ଗ ପାରଦେଇ ପୁର, ଆଳି କନିକା ଏହି ଆଠଗୋଟି ରାଜ୍ୟକୁ ଓଡ଼ରାଷ୍ଟ୍ର କୁହାଯାଉ ଥିଲେ ମଧ୍ୟ ଓଡ଼ଦେଶ ସେଗୁଡ଼ିକ ଠାରୁ ପ୍ରାଚୀନତର । ଯେତେବେଳେ ଓଡ଼ପଡ଼ର ଉତ୍କଳ ଖଣ୍ଡାୟତ ମାନେ କନ୍ଦଳ ନଦୀ ବନ୍ଦରରେ ଜଳ ଯୁଦ୍ଧରେ ବ୍ୟାପୃତ ଥିଲେ ସେ ସମୟରେ ପୂର୍ବବର୍ଣ୍ଣିତ ଆଠଗୋଟି ରାଜ୍ୟ ଲୋକ ଲୋଚନ ଅଗୋଚରରେ ରହିଥିଲା । ଏଥିରୁ ଅନୁଧ୍ୟାନ କଲେ ଜଣାଯାଏ କନ୍ଦଳନଗର ହରପ୍ପା ବା ମହେଞ୍ଜୋଦାରୋ ପରି ପ୍ରାଚୀନ ନହେଲେ ସୁଦ୍ଧା ତଥାପି ଏହା ଅତି ପ୍ରାଚୀନ ସମୃଦ୍ଧି ଶାଳୀ ନଗର ରୂପେ ବିଦ୍ୟମାନ ଥିଲା । ଯଦି କନ୍ଦଳ-ନଗରକୁ ସନ୍ତରା ବଣ ବୋଲି କୁହାଯିବ ତାହା ଅସମ୍ଭବ ବୋଲି ଭାବିବା ଠିକ୍ ନୁହେଁ । ଚନ୍ଦ୍ରଭାଗା ତୀରରେ କୌଣସି ପାହାଡ଼ ନାହିଁ ପୁରାଣର ଉକ୍ତି ଅନୁଯାଇ ଶ୍ୟାମ ଲୌହ ମୂଷଳ ମାଳକନ୍ଦରରେ ଘର୍ଷଣ କରି ତାହାର ଅତି କ୍ଷୁଦ୍ରାଂଶ ଘଷି ନପାରି ସମୁଦ୍ର ଗର୍ଭକୁ ଫିଙ୍ଗି ଦେଇ ଥିଲେ । ସେହି ଘର୍ଷଣ ଜନିତ ଲୌହ ଚୂର୍ଣ୍ଣ ସମୁଦ୍ରରୁ କାଦୁଅ ନଦୀ ଜଳରେ ପ୍ରବେଶ କରିବା ଓ ତାହାର ଏରକାର

ବନ ସୃଷ୍ଟି ହେବା କାହିଁକି ଅବା ଅସମ୍ଭବ ହେବ ? ଶାରଳା ଦାସଙ୍କ ଲେଖାରୁ ଜଣାପଡ଼େ ଯମ ଚିଙ୍ଗି ଦେଇ ଥିବା ସାମାନ୍ୟ ଲୌହ ଖଣ୍ଡକୁ ଗୋଟିଏ ମତ୍ସ୍ୟ ଉଦରସାତ୍ କରିଥିଲା । ବେଣ୍ଟପୁରର କୁଞ୍ଜରା ନାମକ ଶବର ଜାଲ ଦ୍ୱାରା ସେ ମାଛ ଧରି ତାର ପ୍ରିୟ ବନ୍ଧୁ ଜାରାଶବରକୁ ଉପହାର ଦେଇଥିଲା । ଜାରାର ସ୍ତ୍ରୀ ମାଛ କାଟିବା ସମୟରେ ସେ ଲୁହା ଚିଙ୍ଗି କି ମାଛ ପେଟରୁ ପାଇ ଜାରାଶବରକୁ ଦେଇଥିଲା । ଜାରା ଉକ୍ତ ଲୌହଖଣ୍ଡ କମାର ଶାଳକୁ ନେଇ ଗୋଟିଏ ଶର ନିର୍ମାଣ କରାଇଲା । ସେହି ଶରରେ ସେ ଶ୍ରୀକୃଷ୍ଣଙ୍କ ପାଦ ପଦ୍ମକୁ ବିଦ୍ଧ କରିଥିଲା ।

ଜାରାଶବର ହୀରାପାଞ୍ଜଳ ବେହଣା କୁଣ୍ଡର ଅଧିବାସୀ । ବେହଣା କୁଣ୍ଡ ପ୍ରାଚୀ ମହୋଦଧି ଅର୍ଥାତ୍ ପ୍ରାଚୀନ କନ୍ଦଳ ନଗର ଦକ୍ଷିଣରେ ରହି ଯେଉଁ ଶ୍ୟାମାୟମାନ ମାଧୁର୍ଯ୍ୟ ପ୍ରକଟନ କରୁଥିଲା, ତାହା ବର୍ତ୍ତମାନ ଜାଣିତ ବନମାଳୀ ପୁର ନିକଟସ୍ଥ ଶିଅଳୀଲତା କୋଳରେ ଶ୍ରୀକୃଷ୍ଣ ବିଶ୍ରାମ ଲାଭ କରିବା ସମୟରେ ତାଙ୍କ କମଳ ରଙ୍ଗ ସଦୃଶ ପାଦକୁ ଜାରାଶବର ମୃଗକର୍ଣ୍ଣ ଭାବି ବାଣ ବିଦ୍ଧ ଥିଲା, ବୋଲି ପ୍ରବାଦ ଅଛି । ମତରେ ଯଦୁବଂଶ ଧ୍ୱଂସ, ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ପୁରୀଜିଲ୍ଲାରେ ସଂଘଟିତ ହେଲେ ମଧ୍ୟ ଅଯୋଧ୍ୟା ଭୂମି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ତାଙ୍କ ଦାହ କ୍ରିୟା ସମାହିତ ହୋଇଛି ।

କାଳ ଚକ୍ରର ଆବର୍ତ୍ତନରେ କାଳିର କନ୍ଦଳ ନଗରେ ଆଜି କନ୍ଦଳ ପୁର ନାମକ ଏକ କ୍ଷୁଦ୍ର ଗ୍ରାମରୂପେ ପରିଚିତ ହେଲେ ମଧ୍ୟ ପ୍ରାଚୀନ ନଗରେ ହିସାବରେ ଏହା ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ଲାଭ କରିଥିଲା । ଲଙ୍କେଶ୍ୱର ରାବଣର ବର ପ୍ରାପ୍ତି, ଯଦୁ ବଂଶରେ ବିଳୟ ସାଧନ, ଯୋଗୀଋଷି ମାନଙ୍କ ଯାଗଯଜ୍ଞ, ବିଶ୍ୱାବସୁ ଶବରର ନୀଳମାଧବ ପୂଜନ ବନ୍ଦନ, ଧର୍ମାବଲମ୍ବୀ ମାନଙ୍କ ସମ୍ମେଳନ ରାଜା ମାନଙ୍କର ଗଡ଼, କୂପ ତାଡ଼ାଗ ମଠ, ମନ୍ଦିର, ବୌଦ୍ଧ ବିହାର ଇତ୍ୟାଦି ବିଷୟ ଚିନ୍ତାକଲେ ଆମର ମନେହୁଏ ଦେବଭୂମି କଳିଙ୍ଗର

କନ୍ଦଳନଗରର ସର୍ବୋତ୍କୃଷ୍ଟ ସ୍ଥାନ ଅଟେ । ସାଧବ ମାନଙ୍କ ଜନ୍ମଭୂମି କଳିଙ୍ଗ ନଗରୀର ବୋଇତ ବନ୍ଦାଣ ଉତ୍ସବ ଓଡ଼ିଆ ଜାତିକୁ ଯେ ସର୍ବଶ୍ରେଷ୍ଠ ବାଣିଜ୍ୟଙ୍କ ଜାତି ରୂପେ ପୃଥିବୀ ପୃଷ୍ଠରେ ଚହ୍ଲାଇ ଦିଏ ଏହା କହିବା ବାହୁଲ୍ୟ ମାତ୍ର । କେହି କେହି କହିବାର ଶୁଣା ଯାଇଛି କନ୍ଦଳପୁରରୁ ଯେଉଁ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଥିଲା ସେଥିରୁ କେତୋଟି ରେଭେନ୍ସା କଲେଜ ସଂଗ୍ରହାଳୟରେ ରହିଛି, ଭୁବନେଶ୍ୱର ସଂଗ୍ରହାଳୟ ନୁହେଁ । ସେ ଯାହା ହେଉନା କାହିଁକି ଭାରତ ସରକାର ଉକ୍ତ ପ୍ରାଚୀନ ସଭ୍ୟତାର ପୁନରୁଦ୍ଧାର ପାଇଁ ଚେଷ୍ଟାକଲେ ଭଲ ହୁଅନ୍ତା । ଭାରତର ପଶ୍ଚିମ ଉପକୂଳରେ ଯେପରି ଦ୍ରାବିଡ଼ ସଭ୍ୟତାର ଅଭ୍ୟୁଦୟ ନଦୀ କୂଳରେ ହେଉଥିଲା, ସେହି ସଭ୍ୟତା କାହିଁକି ଭାରତର ପୂର୍ବ ଉପକୂଳରେ ନଥିବ ? ମୋ ମତରେ କନ୍ଦଳନଗର ବା ପ୍ରାଚୀ ସଭ୍ୟତାର ବିକାଶ ଆର୍ଯ୍ୟମାନଙ୍କ ପୂର୍ବରୁ ଦେବଭୂମି କଳିଙ୍ଗରେ ହୋଇଥିଲା ।

ଅସ୍ତରଙ୍ଗ ଠାରୁ ନିଆଳି ପର୍ଯ୍ୟନ୍ତ ଗୋଟିଏ ରେଖା ଟାଣି ନିଆଳି ଠାରୁ ଚନ୍ଦନ ପୁର ଅସ୍ତରଙ୍ଗ ସମାନ୍ତରରେ ଦୁଇଟି ରେଖା ଟାଣିଲେ ତାହା ଗୋଟିଏ ତ୍ରିଭୁଜ ପରି ପ୍ରତୀୟମାନ ହୁଏ । ଏହା ମଧ୍ୟରେ କନ୍ଦଳନଗର ସ୍ୱୀୟ ସ୍ଥାନ ଅଧିକାର କରିଛି । ଚନ୍ଦନ ପୁରରେ ଅନେକ ଜମ୍ବୁବୃକ୍ଷ ମଳୟ ଲାଗି ଆପେ-ଆପେ ଚନ୍ଦନ ହୋଇ ଯାଉଥିଲେ । ଶ୍ରୀକୃଷ୍ଣଙ୍କୁ ଦାହ କରିବାଲାଗି ପାଣ୍ଡବମାନେ ଦଣ୍ଡକାରଣ୍ୟସ୍ଥ ଚନ୍ଦନ ପୁରରୁ ଚନ୍ଦନ କାଠ ସଂଗ୍ରହ କରିଥିଲେ । କକଟ-ନଗର ଅର୍ଥାତ୍ କାକଟ ପୁର ଚନ୍ଦନ ପୁର ଠାରୁ କୋଣାର୍କ ପର୍ଯ୍ୟନ୍ତ ଲାଗି ରହିଥିଲା ।

ମା ମଙ୍ଗଳା କନ୍ଦଳ ସଭ୍ୟତାର ବହୁଦିନ ପରେ କାକଟ ପୁରରେ ପୂଜେ କରିଥିଲେ । ଏ ପର୍ଯ୍ୟନ୍ତ ଐତିହାସିକ ମାନେ ମଙ୍ଗଳାଙ୍କ ମୂର୍ତ୍ତି ସମ୍ପର୍କରେ ସଠିକ ମତ ପ୍ରକାଶ କରି ପାରୁ ନାହାନ୍ତି । କନ୍ଦଳନଗର ସଙ୍ଗେ କନ୍ଦଳ ତଟିମାର ବିଶେଷତ୍ୱ ରହିଛି । ଏହି ନଦୀ କୂଳରେ ଥିବା ଗ୍ରାମ ଗୁଡ଼ିକ

ଅତ୍ୟନ୍ତ ସମୃଦ୍ଧ । ଶିକ୍ଷା ସଭ୍ୟତାରେ ଅଲୋକିତ ପ୍ରଭାତ ଓ ପ୍ରଦୋଷରେ ନଦୀର ଦୃଶ୍ୟ ଅତ୍ୟନ୍ତ ମନୋ ମୁଗ୍ଧକର । ସାୟଂ ସମୀରଣ ସେବନ ଲାଗି ନଗର ଓ ଗ୍ରାମ ବାସୀମାନେ ନଦୀ କୂଳରେ ଦଳ ଦଳ ହୋଇ ବିଚରଣ କରନ୍ତି । ସକାଳ ଓ ସଞ୍ଜରେ ନାଲିଆ ସୂର୍ଯ୍ୟକିରଣ ନଦୀ ଜଳରେ ସିନ୍ଦୂର ଲହରୀ ସୃଷ୍ଟି କରେ । ମତ୍ସ୍ୟ ଜୀବୀମାନେ ଚନ୍ଦ୍ର ତାରକିତ ଆକାଶ ତଳେ ମତ୍ସ୍ୟ ସଂଗ୍ରହ ଅଭିଯାନରେ ନଦୀ ବକ୍ଷରେ ତରଣୀ ମେଲାଇ ଦେଇ ଥାନ୍ତି । ସୁନା ମୁହାଁ ନିକଟରେ ଭାସମାନ ବୋଇତ ସନ୍ଦର୍ଶନ କରି ଦର୍ଶକ ମାନେ ଆତ୍ମହରା ହୁଅନ୍ତି । କିଏ ନ କହିବ ଯେ ଗଙ୍ଗା ସିନ୍ଧୁ, ବ୍ରହ୍ମପୁତ୍ର, ହୋୟାଙ୍ଗ ହୋ: ୟାଙ୍ଗ ସିକ ଅଙ୍ଗ, ଟାଇଗ୍ରୀସ, ଇଉଫ୍ରେଟିସ ଓ ନୀଳ ନଦୀ କୂଳରେ ମାନବ ସଭ୍ୟତା ଯେପରି ସର୍ବପ୍ରଥମେ ମସ୍ତକ ଉତ୍ତୋଳନ କରିଥିଲା ସେହିପରି ପୂର୍ବ ପ୍ରାଚୀ ବା କନ୍ଦଳ ନଦୀ କୂଳରେ ମାନବ ସଭ୍ୟତା କାହିଁକି ଅବା ଆତ୍ମପ୍ରକାଶ କରି ନଥିବ । ଏ ପର୍ଯ୍ୟନ୍ତ ଐତିହାସିକ ମାନେ ପୂର୍ବ ଉପକୂଳରେ କୌଣସି ପ୍ରାଚୀନ ସଭ୍ୟତାର ସନ୍ଧାନ ପାଇବା ପରି ମନେ ହୁଏ ନାହିଁ । ପୁରାଣ ଉକ୍ତିରୁ ଜଣାପଡ଼େ ପ୍ରାଚୀନତା ଗୋଟାଏ ସହସ୍ର ବର୍ଷ ପ୍ରାଚୀନ । ଏହା ନ ହୋଇଥିବ କାହିଁକି ? ପୂର୍ବ ପ୍ରାଚୀ ଅର୍ଥାତ କନ୍ଦଳ ନଦୀ ଗଣ୍ଡୱାନା ଭୂଖଣ୍ଡରେ ଅବସ୍ଥିତ । ଯେତେବେଳେ ନଗାଧିରାଜ ହିମାଳୟ ସାଗର ଜଳରେ ନିମଜ୍ଜିତ ଥିଲା, ସେ ସମୟରେ ଆଫ୍ରିକାର ଦକ୍ଷିଣାଂଶ ଓ ଭାରତର ଦକ୍ଷିଣାଂଶ ମାଳଭୂମି ଗୁଡ଼ିକ ଗଣ୍ଡୱାନା ଭୂଖଣ୍ଡନାମରେ ଆତ୍ମ ପ୍ରକାଶ କରି ସଗର୍ବରେ ମସ୍ତକ ଉତ୍ତୋଳନ କରିଥିଲେ । ତେଣୁ କନ୍ଦଳ ନଦୀର ଜଳ ଅତ୍ୟନ୍ତ ପବିତ୍ର ବୋଲି ପ୍ରାଚୀନତା ଦୃଷ୍ଟି କୋଣରୁ ମନେହୁଏ ।

କନ୍ଦଳ ନଗରରେ ଆବାହମାନ କାଳରୁ ଧାଙ୍ଗୁଆ ମାନେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛନ୍ତି । ଆଗରୁ ବର୍ଣ୍ଣନା କରାଯାଇ ଅଛି ଏହା ପ୍ରେତାତ୍ମା ମାନଙ୍କର ବାସସ୍ଥଳ ଥିଲା । ଏତଦବ୍ୟତୀତ ହିଂସ୍ର ଜନ୍ତୁ ମାନେ ମାନବ ଶିକାର କରୁଥିଲେ ଏବଂ ମନୁଷ୍ୟ ମାନେ ହିଂସ୍ର ଜନ୍ତୁ ମାନଙ୍କୁ ମଧ୍ୟ ଶର ବର୍ଚ୍ଛା ସାହାଯ୍ୟରେ ମାରିବାର ସୁଯୋଗ ପାଉଥିଲେ । ବଡ଼ ଆଶ୍ଚର୍ଯ୍ୟର କଥା

ହାଡ଼ୁଆ ମାଳ ଜଙ୍ଗଲରେ ବହୁତ ତାଳଗଛ ଥିଲି । ସେହି ତାଳଗଛ ଗୁଡ଼ିକରେ ସମୟେ ସମୟେ ଭୂତ ସବୁ ଦେଖା ଦେଉଥିଲେ । ଥରେ କୁଳମଣି ମହାନ୍ତି ନାମକ ଗ୍ରାମର ଜଣେ ବିଶିଷ୍ଟ ବ୍ୟକ୍ତି କାଠୁରିଆ ମାନଙ୍କ ସହିତ ଜଙ୍ଗଲକୁ ଯାଇଥିଲେ । କାଠୁରିଆ ମାନେ କାଠ କାଟିବା ପାଇଁ ଇତସ୍ତତଃ ହେଲେ । ଝାଞ୍ଜିଦିନ । ଉହୁ ଉହିଆ ଖରାବେଳେ ସୂର୍ଯ୍ୟଙ୍କ ପ୍ରଚଣ୍ଡ କିରଣର ବାରଂବାର ଆଘାତ ମହାନ୍ତି ମହାଶୟଙ୍କୁ ବିବ୍ରତ କରି ପକାଇବା ସଙ୍ଗେ ସଙ୍ଗେ ସେ ଗୋଟିଏ ବଡ଼ ତାଳଗଛ ଛାଇର ଶରଣା ପନ୍ନ ହେଲେ । କୁଳମଣି ମହାନ୍ତି ନିଘୋଡ଼ ନିଦରେ ତାଳଗଛ ମୂଳେ ଶୋଇ ପଡ଼ିଲେ । କଧଳ ନଦୀ ଉପର ଦେଇ ସୁଲୁସୁଲିଆ ପବନ ବହି ଆସୁଥାଏ । କାଠୁରିଆ ମାନେ କାଠ କାଟି ସାରି କାଠ ଗୋଛି ମୁଣ୍ଡାଇ ଘରକୁ ଫେରିଲେ । ପଶ୍ଚିମ ଦିଗ୍ବଳୟରେ ସୂର୍ଯ୍ୟ ଅସ୍ତମିତ । ଧେନୁପଲ ହମ୍ବା ରଡ଼ି କରି ଆନନ୍ଦରେ ଗୃହକୁ ପ୍ରତ୍ୟାବର୍ତ୍ତନ କରିବାରେ ବ୍ୟସ୍ତ । ଚକୁଆ ପକ୍ଷୀ ଚକୋଇକୁ ଛାଡ଼ି ଆକୁଳ କ୍ରନ୍ଦନ କରି କେଉଁ ଆଡ଼େ ଘୂରି ବୁଲୁଥିବ ତାହା କବି କଳ୍ପନାର ବାହାରେ । ଶୁଆ ଶାରୀ, ଘରଚଟିଆ, କଜଳ ପାତି, କୋଇଲି କୁଆ, ବାଯୁଚଢ଼େଇ ପ୍ରଭୃତି ନାନା ଜାତି ପକ୍ଷୀ କଳରବ କରି ନିଜ ନିଜ ନୀଡ଼ ଆଡ଼କୁ ଉଡ଼୍ଡ଼ୟନ ଯାତ୍ରା ଆରମ୍ଭ କରି ଦେଲେ । ପୂର୍ବ ଆକାଶରେ ଚନ୍ଦ୍ର ଉଦୟ ସଙ୍ଗେ ସଙ୍ଗେ ଆକାଶ ଜ୍ୟୋତ୍ସ୍ନା-ଲୋକରେ ଉଦ୍ଭାସିତ । ଚନ୍ଦ୍ର ତାରକାତ ଆକାଶର ଅନିର୍ବଚନୀୟ ରୂପ ମାଧୁରୀ ଦ୍ୱାରା ସମଗ୍ର ବନପ୍ରଦେଶରେ ପ୍ରାକୃତିକ ରମଣୀୟତା ବୃଦ୍ଧି ଲାଭ କଲେ ସନ୍ଧ୍ୟା କୁଳମଣି ବାବୁ ନିଘୋଡ଼ ନିଦରେ ସ୍ୱପ୍ନ ମନ୍ଦିର ରଚନା କରିଛନ୍ତି । ତାଙ୍କର କଣ କେହି ନାହାନ୍ତି ? ସେ କେତେବେଳୁ ଘରଛାଡ଼ି ଆସିଛନ୍ତି ତାଙ୍କୁ ତ କେହି ଖୋଜୁ ନାହାନ୍ତି ? ହିଂସ୍ର ଜନ୍ତୁ ପୂର୍ଣ୍ଣ ଜଙ୍ଗଲ । ବାଘ ଭାଲୁ ଚଣ୍ଡାର ହସ୍ତୀ କବଳରେ ସେ ଅବା କାହିଁକି ପଡ଼ି ନପିବେ ? ଯଦି ଭଗବାନଙ୍କର ଅସୀମ ଦୟା ତାଙ୍କ ପ୍ରତି ଥିବ ତାହାହେଲେ ତାଙ୍କୁ କେହି ଛୁଇଁବେ ନାହିଁ । ସତକୁ ସତ ସେଇଆ ହେଲା । ଖଡ଼ ଖାଡ ଭଡ ଭଡ଼ ମଡ୍ ମଡ୍ ଧଡ୍ ଧଡ୍ ଶବ୍ଦର ତଳଣ ମାସ ଚନ୍ଦ୍ର ନାଡ଼ି । ଗ୍ରହ ତାରା ଆକାଶରେ ନିର୍ନିମେଷ ନୟନରେ

ମହାନ୍ତ ମହାଶୟଙ୍କ ଅ.ଡ଼କୁ ଗ୍ଲହିଁ ରହିଥାନ୍ତି । ଅର୍ଦ୍ଧ ରାତ୍ର । ହଠାତ୍ ସୁ ସୁ ଶବ୍ଦରେ କୁଳମଣି ମହାନ୍ତଙ୍କ ନିଦ ଗୁଡ଼ିଁ କନା ଭଙ୍ଗିଲେ । ସେ ଯାହା ଦେଖିଲେ ତାଙ୍କ ବସ୍ମୟର ସୀମା ରହିଲ ନାହିଁ । ସେ କଣ ସତରେ ଦରକୁ ଫେରିବେ ? ସଖା ନାହିଁ ସହୋଦର ନାହିଁ । କେହି ଅଜ ଏ ଅବେଳରେ ତାଙ୍କ ସହିତ ନାହାନ୍ତି । ବ୍ୟାଘ୍ରର ଗର୍ଜନ ହସ୍ତୀର ବୃଂହିତ ହିଂସ୍ରଜନ୍ତୁଙ୍କୁ ସେ ଭୟ କରନ୍ତି ନାହିଁ । ସେ କେବଳ ଭୟ କରନ୍ତି ଅଶରୀରୀ ଭୂତ ପ୍ରେତଙ୍କୁ । ସେ ଯିବେ କୁଆଡ଼େ । ତାଙ୍କ ସାମନାରେ କିଏ ଜଣେ ଧଳା ହୋଇ ଠିଆ ହୋଇଛି । ତାଙ୍କ ଶରୀର ବରଡ଼ା ପତ୍ର ପରି ଥରିବାକୁ ଲଗିଲା । ମୁହଁରୁ କଥା ବାହାରିଲା ନାହିଁ ! ହଠାତ କିଏ କହିବାର ଶୁଣାଗଲା ମହାନ୍ତି ଏ ଭୟ କରନାହିଁ । ମୁଁ ତୁମର କିଛି କ୍ଷତି କରିବି ନାହିଁ । ତୁମେ ଧୈର୍ଯ୍ୟଧରି ଶୁଣ । ମୁଁ ହେଉଛି ତାଳଗଛ ଭୂତ । ବହୁ ଦିନରୁ ମୁଁ ଅନେକ ବୃକ୍ଷକୁ ଆଶ୍ରାକରି ମୋର ଅଶରୀର ସମସ୍ତ କଟାଇ ସାରିଲିଣି । ଏବେ ଏହି ତାଳଗଛକୁ ଆଶ୍ରାକରିଛି । ତୁମେ ଜଣେ ସତ୍ୟବନ୍ତ ଲୋକ ହୋଇ ଥିବାରୁ ମୁଁ ତୁମକୁ ଅଭୟ ପ୍ରଦାନ କଲି । ବାଘ ଭାଲୁ ସିଂହ ଗଣ୍ଡାର, ସର୍ପ ଆଦି ତୁମର କେହିଁ କିଛି କରି ପାରିବେ ନାହିଁ । ମନୁଷ୍ୟ ମାନଙ୍କ ପରି ସେମାନେ ଅଶରୀର ମାନଙ୍କୁ ଭୟ କରନ୍ତି । କାରଣ ସେମାନଙ୍କର ଶରୀର ଅଛି । କନ୍ଦଳ ନଗର ଯେତେବେଳେ ବନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା, ଉଲଗ୍ନ ମାନବ ମାନେ ଜଙ୍ଗଲର ଘୁଷିରି ଅଗ୍ନି ସାହାଯ୍ୟରେ ହିଂସ୍ର ଜନ୍ତୁମାନଙ୍କୁ ତଡୁଥିଲେ ମୁଁ ସେହି ସମୟରୁ ଏହି ଜଙ୍ଗଲରେ ଅଛି । ମୁଁ ସବୁ ଦେଖିଛି । ରାଜା ରାଣୀ ପାତ୍ର ମନ୍ତ୍ରୀ ଧନୀ ରଙ୍କିବ ପ୍ରଜା ପାଠକ ଯୁଗ ଯୁଗ ଧରି କନ୍ଦଳ ନଗରେ ମାଟିରେ ଜନ୍ମ ଗ୍ରହଣ କରି ଶେଷରେ ବିଲୟ ହେଉଛନ୍ତି । କନ୍ଦଳ ଧାର ପଥର ବୁହା ନଦୀରେ ପଥର ନିଆଯାଇ କିପରି ଚନ୍ଦ୍ରଭାଗା ନଦୀ ମୁହାଣରେ କୋଣାର୍କ ମନ୍ଦିର ନିର୍ମାଣ କରାଗଲେ ତାହା ମଧ୍ୟ ମୋ ଅଗୋଚରି ଆଖିରୁ ବାଦ ଯାଇନି । ସାଧବ ପୁଅ ଝିଅର ପ୍ରେମ କାହାଣୀ ମୁଁ ଶୁଣିଛି । ହାଡୁଆ ମାଳର ଅନେକ ଅଗନ୍ତ ବନସ୍ତ ଭିତରେ କେଉଁଠି ସାଧବ ମାନେ ସୁନା ରୁପା ହୀରା ନୀଳା ମୋତି ମାଣିକ

ହୋଇ ଯାଇଛନ୍ତି, ତାହା ମଧ୍ୟ ମୁଁ ଜାଣେ । ଯଦି ସେ କଥା ମୁଁ କାହାଆଗରେ କହିଦିଏ ପ୍ରେତପୁରରେ ମୋ ଶରୀର ଯୋଡ଼ାଜନା କରିବ । ତେଣୁ ମୁଁ କୌଣସି ଲୋକକୁ ଉକ୍ତ ସ୍ଥାନ ଦେଖାଇବି ନାହିଁ । ଆଗକାଳର ମଣିଷ ଆଉ ନାହାନ୍ତି । ତୁମ ସମୟ ପରେ ଯେଉଁ ମଣିଷ ଆସିବେ ସେମାନେ ପ୍ରଥମେ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ଓଙ୍ଗାବୁଡ଼ାଇ ଦେବେ । ରାଜ ଶାସନ ଲୁଚିଯିବ । ସ୍ୱାଧୀନତା ଆସିବ, ଯେଉଁହାତକୁ ସିଏ ହେବେ ଚଉଦ ପାଆ । ଦଅଁ ଦେବତାଙ୍କୁ କେହି ମାନିବେନାହିଁ । ରାଜାପରିବର୍ତ୍ତେ ଏ ଦେଶରେ ଆସିବ ଲୋକ ପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥା । ରାଜାମାନେ ଆଗେ ବହୁ ଉପାୟରେ ଲୋକମାନଙ୍କୁ ଡ଼ର ଦେଖାଇ ଅର୍ଥ ଉପାର୍ଜନ କରୁଥିଲେ ସୁଦ୍ଧା ନିଜପାଇଁ ଅତ୍ୟଳ୍ପ ଧନ ରଖି ଅବଶିଷ୍ଟାଂଶ ଜନ ମଙ୍ଗଳ କାର୍ଯ୍ୟରେ ଖରଚ କରୁଥିଲେ । ଉପଯୁକ୍ତ ନ୍ୟାୟ ସେମାନଙ୍କଠାରେ ଆଶା କରା ଯାଉଥିଲା । ବର୍ତ୍ତମାନ ପରିସ୍ଥିତି ହେଉଛି ସରକାରକା ମାଲ୍, ଦରିଆମେ ଡାଲ୍ । ଚୋର ଡ଼କାୟତ, ଗୁଣ୍ଡା ବଦମାସୀଙ୍କ ଅଡ୍ଡାସ୍ଥଳ ଯଦି ସହର ମଫସଲ ହୁଏ ତାହା ହେଲେ ଶାନ୍ତି ମିଳିବ କେଉଁଠି ? ବ୍ୟକ୍ତିଗତ ସ୍ୱାର୍ଥ ଲାଗି ସମୂହ ସ୍ୱାର୍ଥକୁ ବଳି ଦିଆଯିବ । ଅନ୍ୟାୟ ଓ ଅସଦ ଉପାୟରେ ଉପାର୍ଜନ କରୁଥିବା ବ୍ୟକ୍ତିଗଣ ନିଜ ନିଜର ପ୍ରତିଷ୍ଠା ଲାଗି ଜନ-ସମାଜର ସାହାଯ୍ୟ ଲୋଡ଼ିବେ ଏ ଅନ୍ଧସମାଜ ପୁନର୍ବାର ସେହି ବ୍ୟକ୍ତି ମାନଙ୍କ ପଛରେ ସଂଘ ବଦ୍ଧ ହେବ । ନାରୀଧର୍ଷଣ ନାରୀ ନିର୍ଯ୍ୟାତନା ହେବ ଆଗାମୀ ଯୁଗର ସନ୍ଦେଶ । ଅଧିକାଂଶ କଳଙ୍କ କାଳିମା ବ୍ୟକ୍ତି କରିବେ ଦେଶ ଜାତି ସମାଜକୁ ନିୟନ୍ତ୍ରଣ । ସରକାରୀ ବେସରକାରୀ କର୍ମଚାରୀ ବୃନ୍ଦ ହେବେ ଭୀତତ୍ରସ୍ତ ଶଙ୍କିତ । ଆର୍ଯ୍ୟମାନଙ୍କ ସମୟରେ ଯଜ୍ଞରେ ଦେବତା ମାନଙ୍କୁ ସୋମରସ ଅର୍ପଣ କରାଯାଇ ପ୍ରସାଦରୂପେ ସେବନ କରାଯାଉଥିଲା । ତା ମଧ୍ୟ ମୁଁ ଦେଖିଛି । ତୁମେ ଦେଖିବାକୁ ପାଇବ ଯେବେ ବଞ୍ଚିଥାଅ ଶତକଡ଼ା ପଞ୍ଚାନବେ ଲୋକଙ୍କ ହାତରେ ଆଧୁନିକ ସୋମରସ ଦଡ଼ା ବା ମଦ ବୋତଲ । ଉପପତି ଉପପତ୍ନୀଙ୍କ ସଂଖ୍ୟା ଏତେ ମାତ୍ରାରେ ବଢ଼ିଯିବ ଯାହାକି ସମାଜର ନୈତିକ ମାନଦଣ୍ଡକୁ

ଅଟରେ ଚୂର୍ଣ୍ଣ ବିଚୂର୍ଣ୍ଣ କରିବ । ନାରୀ ପ୍ରଗତିକୁ କେନ୍ଦ୍ରକରି ନାରୀ ମାନଙ୍କର ସାମାଜିକ ଜୀବନ ଧ୍ୱଂସପାତ କରିବା ପାଇଁ ଯୋଜନାରେ ରୂପାୟିତ ହେବ ।

ସଭା ସମିତି ଜରିଆରେ ନିରକ୍ଷର ଅଶିକ୍ଷିତ ଜନସାଧାରଣଙ୍କୁ ଭୁଲାଇ ଅସଂଖ୍ୟ ଟାଉଟର ଗାଁ ଗହଳି ସହର ବଜାରରେ ଖେଳିଯିବେ, ବଢ଼ି ଝଡ଼ ଦୁର୍ଭିକ୍ଷ, ମହାମାରୀ ମୁଷ୍ଟିମେୟ ଲୋକଙ୍କୁ ବଡ଼ଲୋକ କରିବା ସଙ୍ଗେ ସଙ୍ଗେ ବହୁ ଲୋକଙ୍କୁ ବାସ୍ତୁ ହରା ଦାଣ୍ଡର ଭିକାରୀ କରାଇବ । ସ୍ୱାଧୀନ ସରକାର ତାଙ୍କ ଉଗ୍ରସେନ ବିଭାଗ ସାହାଯ୍ୟରେ ଗରିବ ଲୋକମାନଙ୍କୁ ଦମନ ଓ ଧନୀ ଲୋକମାନଙ୍କୁ ସାହାଯ୍ୟ କରିବାରେ ପଶ୍ଚାଦ୍ ପଦ ହେବେ ନାହିଁ । ବିଭିନ୍ନ ଦଳଗତ ସମସ୍ୟା ଭାରତ ବର୍ଷରେ ଉପୁଜ ହତ୍ୟା, ଲୁଣ୍ଟତରାଜ, ନାରୀଧର୍ଷଣ ଇତ୍ୟାଦିର ପଥ ଉନ୍ମୋଚନ କରିବ । ଧର୍ମଗତ କନ୍ଦଳ ସୃଷ୍ଟି ଦ୍ୱାରା ସରକାର ଦୋହୁଲ୍ୟମାନ ଅବସ୍ଥାରେ ରହିବ । ଏ ସବୁର ନିରାକରଣ ପାଇଁ ନୈତିକତା ପୂର୍ଣ୍ଣ ସମାଜ ଆମର ଲୋଡ଼ା । ସମାଜ ଠିକ୍ ରହିବା ପରେ ସରକାର ମଧ ଠିକ୍ ରହିବ । ଈଶ୍ବରବନ୍ତ, ଧର୍ମପରାୟଣ ବ୍ୟକ୍ତିମାନଙ୍କ ସଂଖ୍ୟା ସମୁଦ୍ରକୁ ଶଂଖେ ହେବ । ସେମାନେ ଆଧୁନିକ ସମାଜରେ ଗୁଣ୍ଡା ବଦମାସଙ୍କ ଦ୍ୱାରା ଲାଞ୍ଛିତ ଅପମାନିତ ହେବେ । ଜ୍ଞାନୀ ଲୋକ ମାନଙ୍କୁ କେହି ଜାଣିବେ ନାହିଁ । କ୍ରମେ କ୍ରମେ ଜଙ୍ଗଲ ଶୂନ୍ୟତା ଭଜିବ । ଲାଞ୍ଚ ରିସପତ ଦୁର୍ନୀତି ଯୌତୁକ ପ୍ରଥା ଏ ସମାଜ ଦେଶ ଜାତି ମୁଖରେ କଳଙ୍କ କାଳିମା ଲେପନ କରିବ । ଆଉ ଗୋଟିଏ କଥା କହୁଛୁ ସାବଧାନ ହୋଇ ଶୁଣ ଆଗାମୀ ଯୁଗରେ ତୁମେ ଯାହାର ଉପକାର କରିଥିବ ସେ ପ୍ରଥମେ ତୁମର କ୍ଷତି କରିବ ଖାଦ୍ୟ ଔଷଧପତ୍ର ସବୁ ଭେଜାଲ ହେବା ହେତୁ ଅଚହ୍ନା ବେମାରୀ ଭୋଗି ଲୋକେ ପ୍ରାଣ ହରାଇବେ। ସେ ଯୁଗରେ ଦୋକାନୀ ଗରାଖଙ୍କୁ ଗରାଖ ଦୋକାନୀଙ୍କୁ ଛାତ୍ର ଶିକ୍ଷକଙ୍କୁ ଶିକ୍ଷକ ଛାତ୍ରଙ୍କୁ ନେତା ଭୋଟରମାନଙ୍କୁ ଓ ଭୋଟର ମାନେ ନେତାଙ୍କୁ ଠକିବାର ଜ୍ୱଳନ୍ତ ଉଦାହରଣମାନ ଦେଖାଯିବ । ମୁଷ୍ଟିମେୟ ପୁଞ୍ଜିପତିଙ୍କ ଦୌରାତ୍ମ୍ୟରେ ଦେଶ

ବିପଦ ସଂକୁଳ ହେବ ଏବଂ ଦେଶର ଚିର କଷ୍ଟ ଲବ୍ଧ ସ୍ୱାଧୀନତା ସେ ବିପନ୍ନ ହେବ ସେଥିରେ ସନ୍ଦେହର ଅବକାଶ ନାହିଁ । ଆହୁରି ଅନେକ କଥା ଅଛି । ହୁଏତ ନା ହୁଏତ ତୁମ ସହିତ ମୋର ପୁନର୍ବାର ଦେଖା ହେବ । ସେତେବେଳେ ମୁଁ ତୁମକୁ ଦେଶର ଭବିଷ୍ୟତ ସଂପର୍କରେ କହିବି । ବର୍ତ୍ତମାନ ମୁଁ ତୁମର କି ଉପକାର କରିବି ନିର୍ଭୟରେ ପ୍ରକାଶ କର । କୁଳମଣି ବାବୁ ସାହସ ସଞ୍ଚୟ କରି କହିଲେ ମୋତେ ଦୟାକରି ମୋ ଘର ପାଖରେ ଛାଡ଼ିଦେଇ ଆସନ୍ତୁ । ତାଳଗଛ ଭୂତ ଗୁହୁଁ ଗୁହୁଁ ଅଦୃଶ୍ୟ ହେଲା । ନିକଟସ୍ଥ ଝଂକା ବରଗଛ ଆଡୁ ଝଙ୍କାଏ ପବନ ଆସି ମହାନ୍ତି ମହାଶୟଙ୍କୁ ଶୂନ୍ୟରେ ଉଡ଼ାଇ ନେଲା । ପାହାନ୍ତିଆ ପହର ବେଳକୁ କୁଳମଣି ମହାନ୍ତି ତାଙ୍କ ଦାଣ୍ଡ ପିଣ୍ଡାରେ ସେପରି ବସନ୍ତି ସେହିପରି ବସିଛନ୍ତି । ତାଙ୍କ ସୁଯୋଗ୍ୟ ସନ୍ତାନ ଶ୍ରୀ ହୃଦାନନ୍ଦ-ମହାନ୍ତି ତାଙ୍କୁ ଦେଖି ତାଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ବାପାଙ୍କଠାରୁ ସବୁ ବିଷୟ ସେ ଶୁଣିଲେ ଏବଂ ତାଙ୍କବାପା ବିପଦରୁ ରକ୍ଷା ପାଇଥିବାରୁ ସେ ଜଗନ୍ନାଥଙ୍କୁ ଅଶେଷ ଧନ୍ୟବାଦ ଦେଲେ । ସେ ହାଣ୍ଡୁଆ ମାଳରେ ଆଜି ଜଙ୍ଗଲ ଶୂନ୍ୟ ହୋଇ ଆସୁଛି । ଲୋକେ ଲଟା କାଟି ଘରଦ୍ୱାର ଆରମ୍ଭ କଲେଣି । ତଥାପି ଏହାର ପାର୍ଶ୍ୱ ଦେଇ ଅସ୍ଥି କଙ୍କାଳ ସାର କନ୍ଦଳ ତଟିନୀ ପ୍ରବାହିତ ହେଉଛି । ଏହି ପ୍ରାଚୀନ ନଦୀ ଅତୀତ ଇତି ବୃତ୍ତର ମୂକ ସାକ୍ଷୀ । କନ୍ଦଳ ନଦୀ ବନ୍ଦରରେ ଜଳଦସ୍ୟୁମାନଙ୍କ ଉତ୍ପାତ ଅତ୍ୟନ୍ତ ଭୟଙ୍କର ଥିଲା । ଥରେ ସୁନାମୁହିଁଠାରୁ ଗୋଟିଏ ବୋଇତ ସେହି ନଦୀରେ ଜାଭାଦ୍ୱୀପ ଯାତ୍ରା କଲା । ବୋଇତ କୁଦ [ କାକଟପୁର ନିକଟବର୍ତ୍ତୀ ] ଠାରେ ସାଧବମାନେ ଗୋଟିଏ ରାତ୍ର ଆରାମରେ କଟାଇ ତତ୍ପର ଦିନ ବୋଇତ ବଙ୍ଗୋପ ସାଗର ଅଭିମୁଖରେ ଛୁଟାଇ ଦେଲେ । ମାଳ ଦରିଆର ଛୁଟି ଚରି ଝଡ଼ବତାସ ସହିତ ଅହରହ ସଂଗ୍ରାମ କରି ବୋଇତ ଜାଭାରେ ପହଞ୍ଚିଲା । ଓଡ଼ିଆ ସାଧବମାନଙ୍କୁ ସେଠାରେ ଜନସାଧାରଣ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କଲେ । ସାଧବମାନେ ବାଣିଜ୍ୟ ବ୍ୟବସାୟ ସାରି ଏକ ବର୍ଷପରେ ଅଜଳନ୍ତା ଧନରତ୍ନ ସହ ସ୍ୱଦେଶକୁ ଫେରିଲେ । ସୁଦର୍ଶନ ଲାଞ୍ଛିତ ପତାକା ଉଡ଼ାଇ ମାଳ ପାରିବାର ବେଶରେ

ଜଳଦସ୍ୟୁ ମାନଙ୍କ ଡଙ୍ଗା ସେମାନଙ୍କର ପଶ୍ଚାଧାବନ କଲା ସତ ମାତ୍ର ସେମାନେ ଏତେ କ୍ଷିପ୍ର ଗତିରେ ବୋଇତ ଛୁଟାଇ ଦେଇଥିଲେ ଯେ ଜଳଦସ୍ୟୁ ମାନଙ୍କ ଡଙ୍ଗା ସେମାନଙ୍କର ବୋଇତକୁ ସ୍ପର୍ଶ କରି ପାରି ନଥିଲା । ଜଳଦସ୍ୟୁମାନଙ୍କ ଡଙ୍ଗା ବଙ୍ଗୋପସାଗର ପର ପାରିରେ ଥିବା ପରି ଜଣାପଡୁ ଥାଏ । କିଛି ଦୂରରେ ସାଧବମାନେ ବୋଇତ କୂଳରେ କିଛି ସମୟ ବିଶ୍ରାମ କରି ଠିକ୍ ନିଶାର୍ଦ୍ଧରେ ସୁନାମୁହାଁ ଅଭିମୁଖେ ବୋଇତ ଛୁଟାଇ ଦେଲେ । ଓଡ଼ପଡ଼ା ନିକଟରେ ଜଳଦସ୍ୟୁମାନଙ୍କ ଡଙ୍ଗା ଗୁଡ଼ିକ ଚତୁର୍ଦ୍ଦିଗରୁ ବୋଇତକୁ ଆକ୍ରମଣ କଲେ । ଓଡ଼ପଡ଼ାର ଉକ୍ତ ଖଣ୍ଡାୟତମାନଙ୍କୁ ସାଧବମାନେ ଖବର ଦେଇ ପାରିଲେ ନାହିଁ । ସାଧବ ମାନଙ୍କ ରକ୍ତରେ କନ୍ଦଳ ନଦୀର ଜଳ ଲାଲ ହୋଇ ଉଠିଲା । ସମସ୍ତ ସାଧବମାନଙ୍କୁ ହତ୍ୟାକରି ଜଳଦସ୍ୟୁମାନେ ଉକ୍ତ ବୋଇତରେ ସକଳ ସମାଧି ରଚନା କରିଥିଲେ । ଏହିରୁ ଘଟଣା ତାଳଚଟ୍ଟ ଭୂତ କିମ୍ବଦନ୍ତୀ ଦେଖିଥିବ ।

କନ୍ଦଳ ନଦୀ କୂଳରେ ସବୁଠାରୁ ଆଶ୍ଚର୍ଯ୍ୟ ହେଉଛି ସୋମେଶ୍ୱର ମହାଦେବଙ୍କ ମନ୍ଦିର ପ୍ରାଚୀନତା ଦୃଷ୍ଟିରୁ ଏହା ଦ୍ୱାଦଶ ଶତାବ୍ଦୀର ମନେ ହୁଏ । ପ୍ରାଚୀନ ମନ୍ଦିର ଭାଙ୍ଗି ଯାଇ ଥିଲେ ସୁଦ୍ଧା ମୂର୍ତ୍ତି ଗୁଡ଼ିକରୁ ମନ୍ଦିରର ପ୍ରାଚୀନତା ବେଶ୍ ଜଣାପଡ଼େ । ମନ୍ଦିର ଯେତେବେଳେ ନିର୍ମିତ ହେଉନା କାହିଁକ ଯେବେ ଯଦୁବଂଶ ଧ୍ୱଂସ ହେଲା, ତାପରେ ଶ୍ରୀକୃଷ୍ଣ ସୋମେଶ୍ୱର ମହାଦେବଙ୍କୁ ପ୍ରାର୍ଥନା କରି ପୁନର୍ବାର ଦର୍ଶନ ଚନ୍ଦ୍ର ପାଇଥିଲେ । ଗୋଟିଏ କଥା ଅଛି ଭାଗବତରେ

ପ୍ରଦ୍ୟୁମ୍ନ ନାଶି ଚନ୍ଦ୍ର ଚଳା
କୃଷ୍ଣ କରକୁ ନ ଅଇଲା ।

ସେହି ଚନ୍ଦ୍ରର ଚିହ୍ନ ଏବେ ମଧ୍ୟ ଅତି ଟିଆ ମଠ ନିକଟରେ ଦେଖିବାକୁ ମିଳେ । କୃଷ୍ଣଙ୍କୁ ଛାଡ଼ି ଚନ୍ଦ୍ର ରହିପାରେ ନାହିଁ; ବା ଚନ୍ଦ୍ରକୁ ଛାଡ଼ି କୃଷ୍ଣ ରହି ପାରିବେ ନାହିଁ । ଏହି ସବୁ ବିଷୟ ଚିନ୍ତାକଲେ ଜଣାପଡେ ସୋମେଶ୍ୱର ଦେବ

କନ୍ଦନଗିରିସ୍ଥ ଘନ ଜଙ୍ଗଲରେ ଯୁଗ ଯୁଗ ଧରି ଆତ୍ମ ଗୋପନ କରିଥିଲେ । କନ୍ଦଳ ନଦୀର ଶାଖା ଚନ୍ଦ୍ରଭାଗା ନଦୀ କୂଳରେ ଓଡ଼ିଆ ଜାତିର ଅନଶ୍ୱର କୀର୍ତ୍ତି କୋଣାର୍କ ମନ୍ଦିର ଯୁଗ ଯୁଗ ଧରି ଏ ଜାତିକୁ ବଞ୍ଚାଇ ରଖିଛି ଓ ରଖିଥିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

କନ୍ଦଳ ନଦୀ ବନ୍ଦରରେ ଓଡ଼ିଆ ପାଇକ ମାନେ ଯେ ଖାଲି ସ୍ଥଳକୂଟ ସୈନ୍ୟ ମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେ ତାହା ନୁହେଁ । ମରହଟ୍ଟା ମାନେ ମଧ୍ୟ ସେମାନଙ୍କ ସହିତ ଲଢ଼େଇ କରିବାକୁ ଭୁଲିନଥିଲେ । ପର୍ତ୍ତୁଗୀଜ, ଓଲନ୍ଦାଜ ମାନେ କନ୍ଦଳ ଓ ଦେବୀ ନଦୀରେ ବାଣିଜ୍ୟ ତରୀ ମେଲି ଦେଉଥିଲେ ସତ କିନ୍ତୁ ଦସ୍ୟୁବୃତ୍ତି ସେମାନଙ୍କର ପ୍ରଧାନ ଜୀବିକା ଥିଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ବିଶେଷତଃ କନ୍ଦଳ ଏବଂ ତାର ଶାଖାନଦୀ ଚିତ୍ରୋପଳା ମୁହାଣରେ ସାଧବ ମାନଙ୍କ ବୋଇତ ଆକ୍ରମଣ କରି ତହିଁରେ ଥିବା ସମସ୍ତ ଧନ ସମ୍ପଦ ଲୁଣ୍ଠନ କରିବାରେ ପଶ୍ଚାଦ ପଦ ହେଉନଥିଲେ । ଏ ସମସ୍ତ ଗ୍ରୀକ୍ ପରିବ୍ରାଜକ ଟୋଲେମିଙ୍କ ଲେଖାରୁ ପରିଷ୍କାର ଭାବରେ ଜଣାପଡ଼େ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ କୋଣାର୍କ ସମୃଦ୍ଧିଶାଳୀ ବନ୍ଦର ରୂପେ ସମଗ୍ର ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲା । ଏ ସବୁ ବର୍ଣ୍ଣନା କରିବା ସଙ୍ଗେ-ସଙ୍ଗେ କନ୍ଦଳ ଅର୍ଥାତ ପୂର୍ବ ପ୍ରାଚୀନଦୀ କୂଳରେ ଥିବା ମଠ, ତୀର୍ଥ ଓ ଦେବ ଦେବୀ ସଂପର୍କରେ କିଞ୍ଚିତ ଆଭାସ ଦେବାକୁ ଭଲ ମନେ କରୁଅଛି, ଏହି ଐତିହାସିକ ପୂର୍ବ ପ୍ରାଚୀ ଅର୍ଥାତ କନ୍ଦଳ ନଦୀ କୂଳରେ ନିମ୍ନଲିଖିତ ମଠ ଗୁଡ଼ିକ ଦେଖାଯାଏ । ପ୍ରତ୍ୟେକ ମଠରେ ପ୍ରାୟ ଜଗନ୍ନାଥ ମୂର୍ତ୍ତି ପୂଜା ପାଆନ୍ତି । କେତେକ ମଠରେ ମଧ୍ୟ ଦଶଅବତାର ମଧ୍ୟରୁ କେତେକ ଅବତାରର ମୂର୍ତ୍ତି ପୂଜା ପାଉଥିବାର ପରିଲକ୍ଷିତ ହୁଏ । ମଠ ଗୁଡ଼ିକ ହେଲା:— ଅନ୍ତର୍ବେଦୀ ମଠ, ରାଧାକାନ୍ତ ମଠ, ଅର୍କତୀର୍ଥ ମଠ, ଅନ୍ଧୁଣିଆ ମଠ, ସିଦ୍ଧ ମଠ, ଗୋପାଳ ମଠ,

ଅଗିଖିଆ ମଠ, ଗୁରୁଦେବ ମଠ, ରୋହଣୀ ମଠ ବିଶ୍ୱାମିତ୍ର ମଠ, ଚକଆ ମଠ, ଦେଉଳ ମଠ, ଅଣ୍ଡବଡ଼ ମଠ, ପଞ୍ଚବଟୀ ମଠ, ବନ୍ତ ମଠ ଓ ଅମସ୍ୱା ମଠ । ଏତଦ୍ ବ୍ୟତୀତ କପିଳ ନଦୀ କୂଳସ୍ଥ ତୀର୍ଥ ଗୁଡ଼ିକ ବାସ୍ତବିକ ଅତ୍ୟନ୍ତ ପବିତ୍ର, ନିର୍ଦ୍ଧାରିତ ଦିନମାନଙ୍କରେ ଉକ୍ତ ତୀର୍ଥ ଗୁଡ଼ିକରେ ସ୍ନାନ କଲେ ଲୋକେ ମୋକ୍ଷଲାଭ ହୁଅନ୍ତି । ତୀର୍ଥ ଗୁଡ଼ିକ ପ୍ରାଚୀ ଅର୍ଥାତ କପିଳ ନଦୀ ତୀରସ୍ଥ ଶିବ ମନ୍ଦିର ନିକଟରେ ବିରାଜମାନ କରନ୍ତି । ସେ ଗୁଡ଼ିକର ନାମ ଯଥା– ଅନ୍ତର୍ବେଦ, ତ୍ରିବେଣୀ ବା ମାତୃକାତୀର୍ଥ, ଅର୍କତୀର୍ଥ ବା ସଙ୍ଗମ ତୀର୍ଥ, ଅଗ୍ନି ତୀର୍ଥ, ବା ମୃତ୍ୟୁତୀର୍ଥ, ବା ମୁକ୍ତିତୀର୍ଥ, କଣ୍ଡୁତୀର୍ଥ ବା ପିତୃତୀର୍ଥ, ଘୃତବରଦା ତୀର୍ଥ, ଉତ୍ତରବାପୁଣୀ ତୀର୍ଥ ବା ସୋମ ତୀର୍ଥ ବିଦ୍ୟାଧର ତୀର୍ଥ ବା ଚକ୍ର ତୀର୍ଥ ବା ଚକ୍ରଧର ତୀର୍ଥ ଚନ୍ଦ୍ରଭାଗା ତୀର୍ଥ ବା ପଦ୍ମକ୍ଷେତ୍ର ମୁକ୍ତି ତୀର୍ଥ ।

ପ୍ରାଚୀ ମହାତ୍ମ୍ୟ ପୁସ୍ତକରୁ ନିମ୍ନୋକ୍ତ ଦ୍ୱାଦଶ ଶମ୍ଭୁଙ୍କର ପରିଚୟ ମିଳେ । ଯଥା— କପିଳେଶ୍ୱର, ଗୋକର୍ଣ୍ଣେଶ୍ୱର, ବଲ୍ଲେଶ୍ୱର, ବ୍ରହ୍ମେଶ୍ୱର ବା ରତ୍ନେଶ୍ୱର, ଶୋଭନେଶ୍ୱର, ସିଦ୍ଧେଶ୍ୱର, ଅଙ୍ଗେଶ୍ୱର, ଗ୍ରାମେଶ୍ୱର, ଅମରେଶ୍ୱର, ସୋମେଶ୍ୱର, ନାଟେଶ୍ୱର ଓ ମୁକ୍ତେଶ୍ୱରଙ୍କ ଯଥାବିଧି ସେବା ପୂଜା ପାଇ ଆସୁଛନ୍ତି । ଉକ୍ତ ଶମ୍ଭୁଙ୍କ ନିକଟରେ କପିଳ, ଭାର୍ଗବ, ନାରଦ, ଜନକ, ଅଗସ୍ତି, କଣ୍ଡୁ, ବିଶ୍ୱାମିତ୍ର ଦଧୀଚି, ମୁଦ୍ଗଲ ଋଷି ଓ ମାର୍କଣ୍ଡ ଋଷି ମାନଙ୍କର ଆଶ୍ରମ ଥିଲା । ସବୁଠାରୁ ଚମତ୍କାର ହୋଇଛି କପିଳ ତୀରସ୍ଥ ମାଧବ ମୂର୍ତ୍ତି ଗୁଡ଼ିକର ଅପରୂପ କମନୀୟ ଛଟା । ଅତୀବ କଳା ପଥରରେ ନିର୍ମିତ ମାଧବ ସତେ କି ଜଗତ ବାସୀଙ୍କ ମଙ୍ଗଳ ସାଧନ ନିମିତ୍ତ ଶାନ୍ତ ଭାବରେ ରହିଛନ୍ତି । ବାସ୍ତବିକ ମାଧବାନନ୍ଦ, ନୀଳମାଧବ, ଜଙ୍ଗାଳି ମାଧବ, କୁଳଙ୍ଗା ମାଧବ, ବୋଲଗଡ଼ ବା ପ୍ରାଚୀ ମାଧବ ରଘୁନାଥପୁର ମାଧବ, ମୁହୁଁଡେଲା ମାଧବ, ନଟାରୁ ମାଧବ, ନଭରଣା ମାଧବ, କାକଟପୁର ମାଧବ ଓ [illegible] ମାଧବ ଦେବଭୂମି କଳିଙ୍ଗର ମହିମା ପ୍ରଚାର କରୁ ନାହାନ୍ତି କି ? [illegible]

କନ୍ଦଳ ନଦୀ କୂଳରେ ପ୍ରସ୍ଥିତ ହୋଇଥିଲା । ଗାଧ ମାନଙ୍କ ମଧ୍ୟରେ ମାଉଙ୍କ ଚଣ୍ଡିଙ୍କ ଗାଧ, ବାଜପୁର ଗାଧ ବାଲନାଶି ଗାଧ ଓ କାଳିଆ ବୁଢ଼ା ଗାଧ ପ୍ରଧାନ ।

କନ୍ଦଳ ନଦୀ କୂଳରେ ଥିବା ବନ ଗୁଡ଼ିକରେ ଚିର ବସନ୍ତ ପ୍ରବାହିତ-ହୁଏ । ନିମ୍ନ ଲିଖିତ ରୂପେ ବନ ଗୁଡ଼ିକର ନାମ କରଣ ହୋଇଛି । ମାଳ ବନ, କାଦମ୍ବରୀବନ, କୁଞ୍ଜବନ, କଣପୁବନ, ବୃନ୍ଦାବନ, ରହସ୍ୟବନ, ହେମବନ, ବସନ୍ତବନ, ଷଣ୍ଡ ବନ, ସଦାନନ୍ଦ ବନ, କିଶୋରୀ କିଶୋରବନ, ଓ ବକୁଳ ବନ କନ୍ଦଳ ନଗର ସ୍ଥିତ ଉପରେ ଯେତେବେଳେ କାଦମ୍ବରୀ ବନ କାଯ୍ୟ ବିସ୍ତାର କରିଥିଲା ଏବଂ ସନ୍ଧ୍ୟାବଣ ତାହାର ଚତୁର୍ଦ୍ଦିଗରେ ଆତ୍ମ ପ୍ରକାଶ କରି ଯଦୁବଂଶ ଧ୍ୱଂସକୁ ପ୍ରତୀକ୍ଷା କରି ବସିଥିଲା, ଠିକ୍ ସେତିକି ବେଳେ ଭଗବାନ ଶ୍ରୀକୃଷ୍ଣଙ୍କ ଅଦ୍ଭୁତ କୋକୁଆ ଭୟ ଯାଦବ ମାନଙ୍କ ପ୍ରାଣରେ ଭୀତି ସମ୍ପାଦକ କରିବାକୁ ତିଳେ ମାତ୍ର କୁଣ୍ଠା ପ୍ରଦର୍ଶନ କରିନଥିଲା ଏସବୁ ପୁଙ୍ଖାନୁ ପୁଙ୍ଖ ରୂପେ ଆଲୋଚନା କଲେ ଆମେ ଜାଣିପାରିବା ଯେ କନ୍ଦଳ ନଗର ପୂର୍ବେ କାଦମ୍ବରୀ ବନ ଓ ସନ୍ଧ୍ୟାବଣ ବେଷ୍ଟିତ ଅନ୍ୟ କିଛି ନଥିଲା ।

କନ୍ଦଳ ନଦୀର ଉତ୍ତର ଓ ଦକ୍ଷିଣ ଉତ୍ତର ପୂର୍ବ ଦିଗରେ ନିମ୍ନଲିଖିତ ଗଡ଼ ଦେଖାଯାଉଥିଲେ ମଧ୍ୟ କନ୍ଦଳ ନଗର ଗଡ଼ ବୋଲି ପରିଚିତ ହୁଏ ନାହିଁ । ଗଡ଼ ଗୁଡ଼ିକ ବାସ୍ତବିକ କନ୍ଦଳ ନଗର ପ୍ରାଚୀନତା ସମ୍ପର୍କରେ ଆମ୍ଭ ମାନଙ୍କୁ ସମ୍ୟକ ଧାରଣା ଦିଏ । କନ୍ଦଳ ଅର୍ଥାତ୍ ପ୍ରାଚୀନ ପ୍ରାଚୀର ଉତ୍ତର ଦିଗରେ ଆମ୍ବଣା କୁଦ ଗଡ଼, ବଳମ୍ପୁର ଗଡ଼, ପୂର୍ବା ଗଡ଼, ବାଳିଆମାଳ କୃଷ୍ଣ ପ୍ରସାଦ-ଚନ୍ଦ୍ର ଗଂଗାଧରପଦା ବା ଠେଙ୍ଗ ତୋଳଗା ଗଡ଼, ମୁକାଗଡ଼ ଉତ୍ତର ପୂର୍ବରେ ସୁନାଗଡ଼ ( ନଟପୁର ) ଗୋପାଳପୁର ଗଡ଼ ( କରଞ୍ଜପୁର ) ନୂଆଗଡ଼ ( ନଗର ) ଓ ପ୍ରାଚୀର ଦକ୍ଷିଣ ଦିଗରେ ଚଣ୍ଡ ଗୁରୁପଡ଼ା, ଭଉଁସ ଗଡ଼, ଇଟା ପୋଖରୀ ଗଡ଼

( ଝିଙ୍କିଡ଼ିଆ ) ଚୁଳସୀପୁର ନବର, ଅମରୁ ପ୍ରସାଦ ଗଡ଼, ପଦ୍ମର ଗଡ଼, ନରାଣିଅ ଗଡ଼, ଦୁର୍ଗାଗଡ଼ ( ଦେଉପୋତା ଗଡ଼ ) ନୈଚେଗଡ଼ ଓ ଗୋଲ୍ବଗଡ଼ ଅବସ୍ଥିତ । ବଡ଼ ଆଶ୍ଚର୍ଯ୍ୟର କଥା କନ୍ଦଳ ନଗର କୌଣସି ଗଡ଼ ବା ନଗର ଥିଲି ବୋଲି କୌଣସି ଠାରେ ଲେଖାଯାଇ ନାହିଁ ପୂର୍ବରୁ କୁହ ଯାଇଛି କନ୍ଦଳପୁରରେ ପୂର୍ବେ କୌଣସି ରାଜବଂଶ ରାଜତ୍ୱ କରୁଥିଲେ । କନ୍ଦଳନଗରେ ବହୁବାର ଶତ୍ରୁ ଆକ୍ରମଣରେ ନଷ୍ଟଭ୍ରଷ୍ଟ ହୋଇଛି । କନ୍ଦଳନଗରର ବାମ୍ପି ଗୁଡ଼ିକ ୧୦୦ କମ୍ବା ୨୦୦ ହାତ ଛଡ଼ାରେ ଖୋଳାଯାଇଥିଲି । ଏତେ ବାମ୍ପି ଖୋଳା ହେବାର କାରଣ କନ୍ଦଳନଗରେ ଜନବହୁଳ ଥିଲି । ପ୍ରାଚୀ ନଦୀ ଗର୍ଭସ୍ଥ ପୁଷ୍କରିଣୀ ଓ ବାମ୍ପି ସମ୍ପର୍କରେ ଖାରବେଳଙ୍କ ହାତୀଗୁମ୍ଫା ଲିପିରେ ଯାହା ଲେଖା ଯାଇଛି ତାହାର ଅର୍ଥ ହେଉଛି ଖାରବେଳ କଳିଙ୍ଗ ନଗରରେ ଥିବା ଶୀତଳ ତଡ଼ାଗ [ପୁଷ୍କରିଣୀ] ଗୁଡ଼ିକର ସଂସ୍କାର କରିଥିଲେ । ଏଥି ପାଇଁ ସେ ୩୫୦୦୦୦୦ ମୁଦ୍ରା ବ୍ୟୟ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଖାରବେଳଙ୍କ ରାଜ୍ୟ ମଧ୍ୟରେ କନ୍ଦଳନଗରେ ବିଦ୍ୟମାନ ଥିଲା । କନ୍ଦଳ ନଦୀ ଅର୍ଥାତ ପୂର୍ବ ପ୍ରାଚୀ କୂଳରେ ଜୟଦେବଙ୍କ କେନ୍ଦୁବିଲ୍ୱ ଗ୍ରାମ ବା ଅଧୁନିକ ଦେଉଳ ଗ୍ରାମ ବିରାଜିତ କହିଲେ ଅତ୍ୟୁକ୍ତି ହେବ ନାହିଁ । କାଶ୍ମୀର ଜଣେ ମୈଥିଳୀ ପଣ୍ଡିତ ତାଙ୍କ ଭକ୍ତ ମାଳା ଗ୍ରନ୍ଥରେ ନିମ୍ନଲିଖିତ ମତେ ଲେଖିଛନ୍ତି ।

ଜଗନ୍ନାଥ ପୁରୀ ପ୍ରାନ୍ତେ ଚେବୋତ୍କଳା ଭିଧେ କେନ୍ଦୁବିଲ୍ୱ ଇତ୍ୟେକୋ ଗ୍ରାମୋ ବ୍ରାହ୍ମଣ ସଂକୁଳଃ ତସ୍ମୋତ୍କଳେ ଅଗ୍ରେ ଦ୍ୱିଜୋ ଜୟଦେବ ଇତିଶ୍ରୁତଃ ବିଦ୍ୟା ଭ୍ୟାସ ରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ । ଅଥଚ ସୈବ ବିପ୍ରା ନ୍ୟୋ ଦେବ ଶର୍ମେତି ବିଶ୍ରୁତଃ ଅନ ପତ୍ୟୋ ବଭୂ ବସୌ ଜଗନ୍ନାଥ ମୁଦାରତଃ ଆମ୍ଭେମାନେ ଏଥିରୁ ଜାଣିପାରୁ ଯେ ପୁରୀ ଜିଲ୍ଲାରେ କେନ୍ଦୁବିଲ ଗ୍ରାମ ନଷ୍ଟହ-ଥିଲି । ପ୍ରାଚୀ କୂଳରେ ଏବେ ମଧ୍ୟ ଦେଉଳ ଗ୍ରାମ ସବେରେ ଜୟଦେବଙ୍କ ସ୍ମୃତି ଧାରଣା କରି ଦଣ୍ଡାୟମାନ । କନ୍ଦଳ ନଦୀ ଓ କନ୍ଦଳନଗରେ ବିଷୟରେ

ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କାକଟପୁର ଗ୍ରାମର ଅବସ୍ଥିତି ସମ୍ପର୍କରେ ସାମାନ୍ୟ ସୂଚନା ଦେବାକୁ ବାଧ୍ୟ ହେଉଛୁ । କାରଣ କାକଟପୁର ଓ କନ୍ଦଳପୁର ଭିନ୍ନା ଭିନ୍ନ ନୁହନ୍ତି । କାକଟପୁରରେ ବ୍ରାହ୍ମଣ ମାନଙ୍କ ପ୍ରାଧାନ୍ୟ ଦୃଷ୍ଟି-ଗୋଚର ହୁଏ ସତ ମାତ୍ର କନ୍ଦଳପୁରରେ କରଣ ମାନଙ୍କ ସାମାନ୍ୟ ଉନ୍ନତି ସେମାନଙ୍କୁ ବହୁ ନିମ୍ନ ସ୍ତରକୁ ଟାଣିନେବାରେ ବ୍ୟସ୍ତ । ହେଲେ ସୁଦ୍ଧା ବ୍ରାହ୍ମଣ ଓ କରଣ ମାନେ ପରସ୍ପରକୁ ଭଲପାନ୍ତି । ପରସ୍ପର ମଧ୍ୟରେ ବିଦ୍ୱେଷ ଭାବ ପରିଲକ୍ଷିତ ହୁଏ ନାହିଁ । ବିଂଶ ଶତାବ୍ଦୀରେ ମା ମଙ୍ଗଳାଙ୍କ ପୀଠସ୍ଥଳ କାକଟପୁର ଇତିହାସର ଅନ୍ଧକାର ବକ୍ଷକୁ ଆଲୋକିତ କରି ପ୍ରାଚୀ ନଦୀ-କୂଳରେ ଆଧୁନିକ କ୍ଷୁଦ୍ର ନଗର ରୂପରେ ଆତ୍ମ ପ୍ରକାଶ କରିଅଛି ।

ପୁରୀ ଜିଲ୍ଲା ନିମାପଡ଼ା ଥାନା ତୁଳସୀପୁର ଗ୍ରାମସ୍ଥ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀଯୁକ୍ତ ନାରାୟଣ ତ୍ରିପାଠୀ କୁକୁଟହୋର କିମ୍ବଦନ୍ତୀ ସମ୍ପର୍କରେ ଆଲୋକ ପାତ-କରିଛନ୍ତି । ହେନେ . ନା ହେନେ ପ୍ରାଚୀ କୂଳ ବୌଦ୍ଧ ଓ ଜୈନ ସଭ୍ୟତାରେ ଋଦ୍ଧିମନ୍ତ ଥିଲା । ତେଣୁ ପ୍ରାଚୀ କୂଳରେ ନିଷ୍ଠସ୍ଥ ବୌଦ୍ଧ ବିହାର ଗୁଡ଼ିକ ଜ୍ଞାନ ବିସ୍ତାର କରିବାକୁ ଯେ ଅନବରତ ପ୍ରସ୍ତୁତ ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ । କଳିଙ୍ଗ ସମର ସମୟରେ ନରମେଧ ଯଜ୍ଞ କରିବା ପାଇଁ ଅଶୋକ ପ୍ରତିଜ୍ଞା ବଦ୍ଧ ହୋଇଥିଲେ । ସେ ଉକ୍ତ ଯଜ୍ଞରେ ୧୦ ୦୦୦ ନରବଳି ଦେବେ । ଯଜ୍ଞରେ କଳିଙ୍ଗ ରାଜ୍ୟର ଯୋଦ୍ଧାମାନେ ବନ୍ଦୀ ଅବସ୍ଥାରେ ପାଟଳୀ ପୁତ୍ରଠାରେ ମସ୍ତକ ଦେବାକୁ ବାଧ୍ୟ ହେଉଥିଲେ । ଦଶହଜାର ମସ୍ତକ ଭୂଲୁଣ୍ଠିତ ହେବା ପରେ ଜଣେ ବନ୍ଦୀ ବୌଦ୍ଧ ସନ୍ନ୍ୟାସୀଙ୍କ ପାଳି ପଡ଼ିଲା । ଆଶ୍ଚର୍ଯ୍ୟର କଥା ବୌଦ୍ଧ ସନ୍ନ୍ୟାସୀ ଅନେକ ଅଲୌକିକ ଘଟଣା ଦେଖାଇ ପାରିଥିବାରୁ ଘାତକ ତାଙ୍କୁ ସମ୍ରାଟ ଅଶୋକଙ୍କ ନିକଟକୁ ନେଇ ସମସ୍ତ ବିଷୟ ତାଙ୍କୁ ଅବଗତ କରାଇଥିଲେ । ଅଶୋକ ଉକ୍ତ ବୌଦ୍ଧ ସନ୍ନ୍ୟାସୀଙ୍କୁ ଗୁରୁ କରି ଅହିଂସାର ଆଶ୍ରୟ ନେବାକୁ ପ୍ରସ୍ତୁତ ହେଲେ । ବୌଦ୍ଧ ସନ୍ନ୍ୟାସୀ ଜଣକ

ସମ୍ରାଟଙ୍କୁ କହିଲେ ଯେ ସେ ତାଙ୍କୁ ନରହତ୍ୟାରୂପକ ଜଘନ୍ୟ ପାପରୁ ତ୍ରାଣ କରି ପାରିବେ ନାହିଁ । ତେଣୁ କୁକୁଟହାର ବିହାରରେ ରହୁଥିବା ସନ୍ୟାସୀଙ୍କ ଗୁରୁ କେବଳ ତାଙ୍କୁ ମୁକ୍ତି ଦେଇ ପାରିବେ । ତେଣୁ ଅଶୋକ କହିଲେ ଯେ (ବୌଦ୍ଧ ସନ୍ନ୍ୟାସୀ) ଯେପରି ତାଙ୍କ ଗୁରୁଙ୍କୁ ପାଟଳୀ ପୁତ୍ର ଆସିବାକୁ କହିବେ । ଯଦି ଗୁରୁ ନଆସନ୍ତି ତାହାହେଲେ ମହା ମହିମ ମଗଧ ସମ୍ରାଟ ଅଶୋକ କୁକୁଟହାର ଯାଇ ଗୁରୁଙ୍କୁ ଦର୍ଶନ ଦେବେ । ଗୁରୁ ଏ ଖବର ପାଇ ଚିନ୍ତାକଲେ ଯଦି ଅଶୋକ ତାଙ୍କ ନିକଟକୁ ଆସନ୍ତି ତାହା ହେଲେ ନର ରକ୍ତରେ ଚଲାପଥ କର୍ଦ୍ଦମାକ୍ତ ହେବ । ତେଣୁ ଗୁରୁ ବାଧ ହୋଇ ପାଟଳି ପୁତ୍ର ଗଲେ । ଏଥିରୁ ସ୍ପଷ୍ଟ ଜଣା ପଡ଼େ କୁକୁଟହାର ବିହାର କଳିଙ୍ଗ ରାଜ୍ୟରେ ଥିଲା । ଏହି କମ୍ବଦନ୍ତୀରୁ ଶ୍ରୀଯୁକ୍ତ ନାରାୟଣ ତ୍ରିପାଠୀ ମତ ପରିପୋଷଣ କରନ୍ତି ଯେ ପ୍ରାଚୀନ କୁକୁଟହାର କାକଟପୁର ବ୍ୟତିତ ଅନ୍ୟ ସ୍ଥାନ ନୁହେଁ । ଉକ୍ତ ବୌଦ୍ଧ ସନ୍ନ୍ୟାସୀ ଉପଗୁପ୍ତଙ୍କ ବ୍ୟତିତ ଅନ୍ୟ କେହି ନୁହନ୍ତି । ଅଶୋକ ଉପଗୁପ୍ତଙ୍କ ଦ୍ୱାରା ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ଥିଲେ । ଉପଗୁପ୍ତ କାକଟପୁର ଅଞ୍ଚଳର ବୌଦ୍ଧ ସନ୍ନ୍ୟାସୀ । ସେ ଶିକ୍ଷା ଦେଇଥିଲେ ମହା ମହିମ ସମ୍ରାଟ ଅଶୋକଙ୍କୁ ହିଂସା ପ୍ରଣୋଦିତ ତରବାରିର ଜୟ ଜୟ ନୁହେଁ ।

ଏବେ ଟ କାଣାର୍କ ନିକଟସ୍ଥ ସମ ଧର୍ମ ଠାରେ ଯେଉଁ ବୌଦ୍ଧ ବିହାରର ସୂଚନା ମିଳୁଛି ତାହା କାହିଁକି ଅନ୍ତା ଉପଗୁପ୍ତଙ୍କ ସ୍ଥାନ ହୋଇନଥିବ ? ଯଦି ତାହା ହୋଇ ନଥିବ ତାହା ହେଲେ କାକଟପୁର ଓ କନ୍ଦଳପୁର ଗ୍ରାମ ମାନଙ୍କର ମାଟିତଳେ ପୋଥିତ ହୋଇଥିବା ଅନ୍ୟ କୌଣସି ବିହାରରେ ଉପଗୁପ୍ତଙ୍କ ଆଶ୍ରୟ ସ୍ଥଳ ଥିବାର ଅନୁମାନ କରାଯାଇ ପାରେ । ବୈଷ୍ଣବ,– ଶାକ୍ତପୀଠ ରୂପେ ମଧ୍ୟ କାକଟପୁର ସ୍ୱୀକୃତ । ଏତଦ୍ ବ୍ୟତୀତ ଏହାକୁ ମହାନ୍ ତନ୍ତ୍ର ପୀଠ ରୂପେ ଗ୍ରହଣ କରାଯାଇ ପାରେ । ଏହି ଅଞ୍ଚଳରେ ଉପଗୁପ୍ତ ତଥଗତଙ୍କ ଶିବେଇ ସାନ୍ତର ଓ ଧର୍ମର କାର୍ଯ୍ୟ ବାସ୍ତବିକ ଜଟେ୍

ବାସୀଙ୍କୁ ଚମତ୍କୃତ କରେ । ଚଅପୋଣ୍ଡ ଉପାଖ୍ୟାନ ମା ମଙ୍ଗଳାଙ୍କ ଗରିମା ପ୍ରକାଶ କରେ । ଶିବେଇ ସାନ୍ତରା, ଧରମା ଓ ବିଶୁମହାରଣାଙ୍କ ଦ୍ୱାରା ନିର୍ମିତ କୋଣାର୍କ ମନ୍ଦିର ଅତିମାନୁଷ କାର୍ଯ୍ୟାବଳୀର ପରିଚୟ ପ୍ରଦାନ କରେ । କୋଣାର୍କ ମନ୍ଦିର କେବଳ ଯେ ତା ନିଜ ସହିତ ତୁଳନା ହୋଇ ପାରିବ । ଗୋଧନ ପଡାର ଅଦ୍ଭୁତ କର୍ମୀ ଧରମା, ବିଶୁ ମହାରଣା, ବାଜପୁରର ଚଅପୋଣ୍ଡ, ଉତ୍କଳଙ୍କର ଶିବେଇ ସାନ୍ତରା କଣ କାକଟପୁର ଅଞ୍ଚଳର ତଥା ବିଶ୍ୱର ଗୌରବ . ନୁହନ୍ତି ? ଦେହଗରର ବୌଦ୍ଧ ସନ୍ୟାସୀ ଉପଗୁପ୍ତ ମଧ୍ୟ କାକଟପୁର ଇତିହାସରେ ଉଜ୍ଜ୍ୱଳ ମଣି ସଦୃଶ ଝଟକୁ ଥିବେ ଏହା ମୁକ୍ତ କଣ୍ଠରେ ଝାଲି ଆମେ କାହିଁକି ଆକୁମାରୀ ହିମାଳୟ ଜନସାଧାରଣ ସ୍ୱୀକାର କରିବେ । ଏହି ଐତିହାସିକ ମାନବ ମାନଙ୍କ ସ୍ମୃତି ରକ୍ଷା ପାଇଁ ଚଳିତ ଶତାବ୍ଦୀରେ ଅଞ୍ଚଳ ବାସୀଙ୍କ ଦ୍ୱାରା କୌଣସି ଉଦ୍ୟମ ହୋଇ ନାହିଁ ଏହା ବଡ଼ ପରିତାପର ବିଷୟ । ଇତିହାସରୁ ମଣିଷ ଯଥେଷ୍ଟ ଶିକ୍ଷା ପାଏ । ପୂଜ୍ୟ ପୂଜାର ବ୍ୟତିକ୍ରମ ହେତୁ ଆମ୍ଭମାନେ ନିମ୍ନ ଗାମୀ ହୋଇ ଆଞ୍ଚଳିକ ଗୌରବ ରକ୍ଷା କରିବାରେ ଅସମର୍ଥ । ତେଣୁ ମୋମତରେ କାକଟପୁର ବାସୀ ଯଦି ବିଶ୍ୱଦରବାରରେ ଅଭିନନ୍ଦିତ ହେବାକୁ ଇଚ୍ଛା ପ୍ରକାଶ କରନ୍ତି ତେବେ ସେମାନେ ପ୍ରୋକ୍ତ ଐତିହାସିକ ମାନବ ମାନଙ୍କ ସ୍ମୃତି ରକ୍ଷା ପାଇଁ ଆଗଭର ହୁଅନ୍ତୁ । କାକଟପୁର ଓ କନ୍ଦଳପୁର ଏବେ ମଧ୍ୟ ପ୍ରାଚୀନତାର ସଂକେତ ଦିଅନ୍ତି । ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଯଦି ଉଭୟ ଗ୍ରାମ ପ୍ରତି ଦୃଷ୍ଟିପାତ କରି ଯଥା ଶୀଘ୍ର ଖନନ ପ୍ରକ୍ରିୟା ଆରମ୍ଭ କରନ୍ତେ ତାହା ହେଲେ ଇତିହାସର ବହୁ ଲୁପ୍ତ ରତ୍ନ ଉଦ୍ଧାର କରାଯାଇ ପାରନ୍ତା । ମୋ ଲିଖିତ "ଅସ୍ତରାଗ" ପୁସ୍ତକରେ ଥିବା "ବିଶ୍ୱର ଗୌରବ" କବିତାରେ ନିମ୍ନ ଲିଖିତ ପଂକ୍ତି ମାଧ୍ୟମରେ ଶିବେଇ ସାନ୍ତରାଙ୍କ କାର୍ଯ୍ୟକୁ ପ୍ରକାରାନ୍ତରେ ସମାଲୋଚନା କରିଥିଲେ ସୁଦ୍ଧା ଏବେ ତାର ପ୍ରକୃତ ମହତ୍ତ୍ୱ ବୁଝି ପାରିଛି ।

"ଷୋଳବର୍ଷ ରାଜ କୋଷ ଆଁମ ବାଇଜର ଫିଙ୍ଗି ଦେଲା ପନ୍ତାରରେ
ଶିବେଇ ସାନ୍ତରା

ଶିବେଇ ଆମ ରାଜ୍ୟର ଷୋଳ ବର୍ଷ ରାଜକୋଷ କୋଣାର୍କ ମନ୍ଦିର ନିର୍ମାଣରେ ବ୍ୟୟ କରିଥିଲେ । କାହିଁକି ? ତାହାର ଅନ୍ତନିହିତ ଗୁଣ ଅଛି କାକଟପୁର ମାଟି ବିଶ୍ୱର ଗୌରବ କୋଣାର୍କ ମନ୍ଦିର ନିକଟକୁ ଚୁମ୍ବକ ସମ ବିଶ୍ୱର କୋଟି କୋଟି ନରନାରୀଙ୍କୁ ଟାଣିଆଣି ପାରୁଛି । ଏହା କମ ଗୌରବର କଥା ନୁହେଁ । କନ୍ଦଳ ନଗରର ପ୍ରାକୃତିକ ବୈଚିତ୍ର୍ୟ ନିଃଶେଷ ହୋଇ ଆସୁଛି । ତଥାପି କର୍ପୁର ଉଡ଼ିଯାଇ କନାପଡ଼ିଲା ପରି ସମୃଦ୍ଧ କନ୍ଦଳ ନଗର ସ୍ଥାନରେ ପଡ଼ିରହିଛି ଅସ୍ଥି କଙ୍କାଳ ସାର କନ୍ଦଳପୁର ।



## ଲେଖକଙ୍କ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

୧ । ବୌଦ୍ଧରାଜ ଅଶୋକ ( ଜୀବନୀ )
୨ । ନାଳ ଦରିଆ ତଳେ (ଉପନ୍ୟାସ )
୩ । ରକ୍ତ ଗୋଲାପ ( କବିତା )
୪ । ସୃଷ୍ଟିର ଛନ୍ଦ ( କବିତା )
୫ । ଜୀବନର ରହସ୍ୟ ( କବିତା )
୬ । ଆଲୋକରେଖା ( କବିତା )
୭ । ସାରୁ ଭିତରେ ମାରୁ ( ରାଜନୈତିକ କବିତା )
୮ । ବଞ୍ଚାଅ ମୋ ଦେଶ ( କବିତା )
୯ । ଚାଳଗଛ ଭୂତ ୧ମ ଭାଗ (କବିତା )
୧୦ । ଚାଳଗଛ ଭୂତ ୨ୟ ଭାଗ (କବିତା )
୧୧ । ଉଛିତ କଦମ୍ବ (କବିତା )
୧୨ । ଅନ୍ତରଙ୍ଗ (ଖଣ୍ଡକାବ୍ୟ)
୧୩ । ଗାଁ ମାମଲତକାର
୧୪ । ଦଓରେଏଣ୍ଟାଲ ଇଂରେଜୀ ଟ୍ରାନ୍‌ସଲେସନ

